# ଉତ୍କଳ ପ୍ରସଙ୍ଗ

ଏକାଦଶ ଭାଗ

ସ୍ୱାଧୀନତା ସଂଖ୍ୟା

ଅଗଷ୍ଟ ପନ୍ଦର, ଉଣେଇଶ ଶହ ଚଉବନ




ସମ୍ପାଦକ

ଶ୍ରୀ ସୁଧୀରଚନ୍ଦ୍ର ଘୋଷ

ପବ୍ଲିକ୍ ରିଲେସନସ୍ ଅଫିସର

ସହ-ସମ୍ପାଦକ

ଶ୍ରୀ ବୈକୁଣ୍ଠଚରଣ ପଟ୍ଟନାୟକ, ବି. ଏ.

ପ୍ରଡକ୍ସନ୍ ଅଫିସର୍



ଓଡ଼ିଶା ସରକାରଙ୍କ ଲୋକସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ

ଫୋନ୍—ଭୁବନେଶ୍ୱର ୧୯ ଓ ୫୦ ଟେଲିଗ୍ରାମ୍—ପବ୍ଲିସିଟି, ଭୁବନେଶ୍ୱର

ବାର୍ଷିକ ଅଗ୍ରିମ ମୂଲ୍ୟ—ଦୁଇ ଟଙ୍କା

ମୁଦ୍ରାକର—ଶ୍ରୀ ଅନସୂୟା ପ୍ରସାଦ ପାଠକ, ସତ୍ୟଭାମା ସମବାୟ ପ୍ରେସ, କଟକ

# ସୂଚୀ





1954 - August - 15

# ଜାତୀୟ ସଙ୍ଗୀତ

ଜନଗଣମନଅଧିନାୟକ ଜୟ ହେ
ଭାରତ-ଭାଗ୍ୟ-ବିଧାତା !

ପଞ୍ଜାବ ସିନ୍ଧୁ ଗୁଜରାଟ ମରାଠା ଦ୍ରାବିଡ଼
ଉତ୍କଲ ବଙ୍ଗ

ବିନ୍ଧ୍ୟ ହିମାଚଲ ଯମୁନା ଗଙ୍ଗା
ଉଚ୍ଛଲ ଜଲଧିତରଙ୍ଗ

ତବ ଶୁଭ ନାମେ ଜାଗେ, ତବ ଶୁଭ
ଆଶିଷ ମାଗେ,

ଗାଏ ତବ ଜୟଗାଥା ।

ଜନଗଣମଙ୍ଗଲଦାୟକ ଜୟ ହେ !
ଭାରତ-ଭାଗ୍ୟ-ବିଧାତା !

ଜୟ ହେ, ଜୟ ହେ, ଜୟ ହେ, ଜୟ ଜୟ ଜୟ ଜୟ ହେ !



# ସ୍ୱାଧୀନତା ଦିବସ ଉପଲକ୍ଷେ

## ରାଜ୍ୟପାଳ ଶ୍ରୀ କୁମାରସ୍ୱାମୀ ରାଜାଙ୍କ ବାର୍ତ୍ତା

ଓଡ଼ିଶାର ରାଜ୍ୟପାଳ ରୂପେ ଅଗଷ୍ଟ ୧୫ ସ୍ୱାଧୀନତା ଦିବସର ବାର୍ଷିକ ଉତ୍ସବ ଉପଲକ୍ଷେ ବାର୍ତ୍ତା ଦେବା ମୋ ପକ୍ଷରେ ଏହା ପ୍ରଥମ ଏବଂ ମୁଁ ଏହାକୁ ପରମଗୌରବ ମନେ କରୁଅଛି । ଆଠବର୍ଷ ହେଲା ଭାରତ ସ୍ୱାଧୀନତା ଲାଭ କରିଅଛି ଏବଂ ଆମ୍ଭେମାନେ ଉକ୍ତ ସ୍ୱାଧୀନତାର ଫଳ ଉପଭୋଗ କରୁଅଛୁଁ । ଆମ୍ଭମାନଙ୍କର ଜାତୀୟ ସ୍ଥିତି ଓ ବିଦେଶୀ ରାଜତ୍ୱରୁ ଦେଶର ମୁକ୍ତି ନିମନ୍ତେ ଯେଉଁ ମହାନ୍ ଓ ଅଦ୍ଭୁତ ପ୍ରଚେଷ୍ଟା ହୋଇଥିଲା ତାକୁ ଚିରସ୍ମରଣୀୟ କରିବା ନିମନ୍ତେ ଅନୁଷ୍ଠିତ ହେଉଥିବା ଏହି ସ୍ୱାଧୀନତା ଦିବସର ପାଳନ ଗୋଟିଏ ଜାତୀୟ ଉତ୍ସବରେ ପରିଣତ ହୋଇଅଛି ଏବଂ ଦାୟିତ୍ୱ ଓ ଗାମ୍ଭୀର୍ଯ୍ୟ ନିର୍ବିଶେଷରେ ଆଜି ଆମ୍ଭେମାନେ ସମସ୍ତେ ସ୍ୱାଧୀନତାର ଓ ସ୍ୱାଧୀନତା ଦ୍ୱାରା ବାଞ୍ଛିତ ତାତ୍ପର୍ଯ୍ୟ ଆଦର୍ଶର ପୂଜା କରିବାକୁ ତତ୍ପର ।

କହିବା ଅଛି ସ୍ୱାଧୀନତା ଯଦି କେବଳ ସୁଫଳ ପ୍ରସବ କରେ ତାହାହେଲେ ତାକୁ ମୂଲ୍ୟବାନ ବୋଲି ମନେ କରିବାକୁ ହେବ । ଏହା ପୂର୍ଣ୍ଣ ଭାବରେ ସତ୍ୟ ଏବଂ ସ୍ୱାଧୀନତାର ଏ ଆଦର୍ଶ ପ୍ରତି ଆମ୍ଭମାନଙ୍କର ଯଥାଯଥ ଭାବରେ ଅବହିତ ହେବା ଉଚିତ । ଗୋଟିଏ କଥାକୁ ଦେଖିଲେ କେବଳ ରାଜନୈତିକ ମୁକ୍ତିର ଅର୍ଥ ସ୍ୱାଧୀନତା ନୁହେଁ । ସ୍ୱାଧୀନତା ଦେଶବାସୀ ନାଗରିକଙ୍କୁ ଉନ୍ନତତର ଜୀବନରେ ଅଧିକାରୀ କରେ । ଅନ୍ନବସ୍ତ୍ର ଅଭାବ ତୁଲ୍ୟ ତୁଚ୍ଛ ଅଭାବରୁ ମୁକ୍ତ ହେବା ଛଡ଼ା ଏହା ସମସ୍ତ ନାଗରିକଙ୍କର ନ ହେଲେ ଅନ୍ତତଃ ପକ୍ଷରେ ଅନେକ ନାଗରିକଙ୍କର ଚିତ୍ରକଳା ବା ଦର୍ଶନ ତୁଲ୍ୟ ଉଚ୍ଚତର ସାଂସ୍କୃତିକ ଶକ୍ତିମାନଙ୍କ ପ୍ରତି ଅନୁରାଗୀ କରେ । ବସ୍ତୁତଃ କହିବା ଅଛି ଯେ ସ୍ୱାଧୀନ ଥିବା ବେଳେ କ୍ଷୁଦ୍ର ନଗର-ରାଷ୍ଟ୍ର ଏଥେନ୍ସ କଳା ଓ ଦର୍ଶନରେ ଉନ୍ନତତମ ବୃଦ୍ଧି ଲାଭ କରି ତା ପାଖ ଧନ ଓ ସମ୍ପଦରେ ପୃଥିବୀର ଅନ୍ୟାନ୍ୟ ଦେଶକୁ ବଳି ଯାଇଥିଲା । ଯଦି ପ୍ରତ୍ୟେକ ନାଗରିକ ସ୍ୱାସ୍ଥ୍ୟବାନ, ସାଧୁ ଓ ମାର୍ଜିତ ରୁଚିସମ୍ପନ୍ନ ହୁଏ ଏବଂ ସକଳ ପ୍ରକାର କୁସଂସ୍କାରମୁକ୍ତ ହୋଇ ମାନବ ଜାତିର ମଙ୍ଗଳ ବିଧାନରେ ବ୍ରତୀ ହୁଏ, ତାହାହେଲେ ସ୍ୱାଧୀନତାର ଆଦର୍ଶ ପରିପୂର୍ଣ୍ଣ ଭାବରେ ସିଦ୍ଧ ହେଲା ବୋଲି କହିବାକୁ ହେବ । ସଂକ୍ଷେପରେ କହିଲେ ସ୍ୱାଧୀନତାର ଅର୍ଥ ଶରୀରର ପରିପୂର୍ଣ୍ଣତା ଓ ବୁଦ୍ଧିର ବହୁମୁଖୀତା । ତେଣୁ ଏହା ହୃଦୟଙ୍ଗମ କରିବାକୁ ମୁଁ ସମସ୍ତ ଦେଶବାସୀଙ୍କୁ ନିବେଦନ କରୁଛି ଯେ କେବଳ ସ୍ୱାଧୀନତାର ବେଷ୍ଟନୀ ମଧ୍ୟରେହିଁ ମାନବ ଅସୀମ ବିକାଶ ହୁଏ ଏବଂ ଏହି କାରଣରୁହିଁ ପ୍ରକୃତ ସ୍ୱାଧୀନତାର ମର୍ମ ଉପଲବ୍ଧି କରିବାକୁ ଏବଂ ତଦ୍ଦ୍ୱାରା ପ୍ରଚଳିତ ଆଦର୍ଶର ପୂଜାରେ ନିଜକୁ ବ୍ରତୀ କରିବାକୁ ଆମ୍ଭେମାନେ ବର୍ଷକୁ ବର୍ଷ ସ୍ୱାଧୀନତା ଦିବସ ପାଳନ କରୁଥାଉଁ ।

ଅମ୍ଭ ଜାତୀୟ ସରକାର ଦେଶର ସମ୍ବଳମାନଙ୍କର ଉପଯୋଗ କରିବା ଓ ଲୋକଙ୍କ ମଙ୍ଗଳବିଧାନ କରିବା ନିମନ୍ତେ ଯେଉଁ ବହୁଳ ପ୍ରଚେଷ୍ଟା କରୁଅଛନ୍ତି ଏ ସମ୍ପର୍କରେ ମୁଁ କିଛିଁର ଉଲ୍ଲେଖ କରୁଅଛି । ସମସ୍ତେ ଜାଣନ୍ତି ଯେ ପ୍ରଧାନ ନଦୀ ଉପତ୍ୟକା ଯୋଜନା, ଜାତୀୟ ଗବେଷଣାଗାର ଏବଂ ପଞ୍ଚବାର୍ଷିକ ଯୋଜନା ସଂକ୍ରାନ୍ତ ଅନ୍ୟାନ୍ୟ ଯୋଜନା ଦ୍ୱାରା ଯୋଗ ଆମ୍ଭେମାନେ ଯଥେଷ୍ଟ ଅଗ୍ରଗତି କରୁଥାଉଁ । ଏ ସବୁକୁ ଆମ୍ଭେମାନେ ଯେଉଁ ଭାବରେ କାର୍ଯ୍ୟରେ ପରିଣତ କରୁଥାଉଁ ତା ଏ ଯୁଗରେ ସମଗ୍ର ଏସିଆରେ ଅତି ଗୁରୁତ୍ୱପୂର୍ଣ୍ଣ ବୋଲି ପ୍ରଶଂସିତ ହୋଇଛି । ଲୋକସାଧାରଣ ଓ ସରକାର ସହଯୋଗ କଲେ କିଛି ଅସାଧ୍ୟ ରହିଯିବ ନାହିଁ । ମୋର ଆନନ୍ଦ ଯେ ଆମ୍ଭମାନଙ୍କର ଯେତିକି ବୁଦ୍ଧି ଓ ସମ୍ବଳ ଅଛି ତାକୁ ଏହାରି ସ୍ୱାଧୀନତାର ଅଷ୍ଟମ ବର୍ଷ ମଧ୍ୟରେ ଆମ୍ଭେମାନେ ବହୁ ସାଫଲ୍ୟ ଅର୍ଜନ କରିଥାଉଁ ଏବଂ ପ୍ରଧାନ ମନ୍ତ୍ରୀ ମହୋଦୟଙ୍କ ନିର୍ଭୀକ ନେତୃତ୍ୱରେ ପୃଥିବୀର ବିବାଦ ଓ ବିସମ୍ବାଦର କ୍ଷେତ୍ରରେ ଆମ୍ଭେମାନେ ସଦ୍ଭାବ ଓ ସୌହାର୍ଦ୍ଦର ବାର୍ତ୍ତା ପ୍ରଚାରିତ କରୁଥାଉଁ । ଏହା ବୋଲି ଆମ୍ଭେମାନେ ନିଶ୍ଚିନ୍ତ ରହିପାରିବା ନାହିଁ ବରଂ ବସ୍ତୁତଃ ପ୍ରଚେଷ୍ଟାର ପରିମାଣକୁ ଅବ୍ୟାହତ ରଖି ଉନ୍ନତ କରିବା । ତେଣୁ ପ୍ରତ୍ୟେକ ଭାରତୀୟ ଜାତି ପ୍ରତି ତାର କର୍ତ୍ତବ୍ୟ ଉପଲବ୍ଧି କରୁ ଏବଂ ସାଧାରଣ ମଙ୍ଗଳ ନିମନ୍ତେ ନିଷ୍ଠା ଓ ଉତ୍ସାହରେ କାର୍ଯ୍ୟ କରି ଚାଲୁ । ଓଡ଼ିଶାବାସୀମାନଙ୍କୁ ମଧ୍ୟ ମୋର ଏହି ନିବେଦନ ।

କୁମାରସ୍ୱାମୀ ରାଜା

---

# ଆଦିବାସୀ ଗ୍ରାମମଙ୍ଗଳ, ଶ୍ରମ ଓ ବାଣିଜ୍ୟମନ୍ତ୍ରୀ ଶ୍ରୀ ସୁନାରାମ ସରେନଙ୍କ ବାର୍ତ୍ତା

## ୧୯୫୪, ଅଗଷ୍ଟ ପନ୍ଦର

ମୁଁ ଗତବର୍ଷ ଏହି ସ୍ୱାଧୀନତା ଦିବସ ଉପଲକ୍ଷେ ଦେଶବାସୀଙ୍କ ପାଇଁ ଯେଉଁ ବାର୍ତ୍ତା ଦେଇଥିଲି, ଏ ବର୍ଷ ତାହାର ପୁନରାବୃତ୍ତି କରିବା ମୁଁ ଉପଯୁକ୍ତ ମଣୁ ନାହିଁ, କାରଣ ମୁଁ ବୁଝିଲିଣି ଆମ ଲୋକେ ସ୍ୱାଧୀନ ଦେଶର ନାଗରିକଭାବେ ତାଙ୍କର ଦାୟିତ୍ୱ ଭଲ ଭାବରେ ଉପଲବ୍ଧି କଲେଣି ଓ ସେମାନେ ଆଉ ଉପଦେଶକୁ ସ୍ପୃହା କରୁ ନାହାନ୍ତି । ମୋତେ ବଡ଼ ଆନନ୍ଦ ଲାଗୁଛି ଯେ ଏ ବର୍ଷ ଅର୍ଥାତ ୧୯୫୩-୫୪ ରେ ଆମର ଯୋଜନାଗୁଡ଼ିକ ଉତ୍ତମରୂପେ କାର୍ଯ୍ୟକାରୀ କରିବା ପାଇଁ ଜନସାଧାରଣଙ୍କଠାରୁ ସରକାରଙ୍କୁ ସବୁ ଦିଗରେ ଯଥେଷ୍ଟ ସାହାଯ୍ୟ ଓ ସହଯୋଗ ମିଳୁଛି ।

ଆନ୍ତର୍ଜାତିକ ପରିସ୍ଥିତି ଦେଖିବାକୁ ଗଲେ ଭାରତର ପାର୍ଶ୍ୱବର୍ତ୍ତୀ ଦେଶମାନଙ୍କରେ ତଥା ଏସିଆ ମହାଦେଶରେ ଯେଉଁସବୁ ଘଟଣାମାନ ଘଟିଯାଉଛି ତାହା ଭାରତକୁ ବିଚଳିତ କରିବା କଥା । ଆମର ପଡ଼ୋଶୀ ପାକିସ୍ଥାନରେ ଅନ୍ତର୍ବିବାଦ ସୃଷ୍ଟି ହୋଇ ଆଜି ପର୍ଯ୍ୟନ୍ତ ଶାନ୍ତି ସ୍ଥାପନ ହୋଇ ନାହିଁ । ପୂର୍ବ ପାକିସ୍ଥାନ ଓ ପଶ୍ଚିମ ପାକିସ୍ଥାନ ବିବାଦରେ ଶାନ୍ତି ସ୍ଥାପନ କରିବା ନିମନ୍ତେ ପାକିସ୍ଥାନ ସରକାର ପୂର୍ବ ବଙ୍ଗରେ ଲୋକ ପ୍ରତିନିଧି ଶାସନକୁ ଦବାଇ ଦେଇ ସାମରିକ ଲାଟ ଶାସନ ଜାରି କରିଛନ୍ତି । ଏହାଦ୍ୱାରା ପାକିସ୍ଥାନର ଗୃହଅଶାନ୍ତି ଅଧିକ ସୃଷ୍ଟି ହୋଇଛି ।

ଇଣ୍ଡୋଚାଇନାରେ ୭/୮ ବର୍ଷ କାଳ ଅନବରତ ଯୁଦ୍ଧ ଲାଗିଲା ପରେ ଏଇ କେତେଦିନ ହେଲା ଆପାତତଃ ଶାନ୍ତି ସ୍ଥାପିତ ହୋଇଛି । ବଡ଼ ସୁଖର କଥା ପଡ଼ୋଶୀ ଦେଶମାନଙ୍କରେ ଏପରି ଗୋଳମାଳ ଲାଗିଥିବା ସତ୍ତ୍ୱେ ଭାରତ ତାର ସ୍ୱାଧୀନତା ହାସଲ କଲାଠାରୁ ଶାନ୍ତିପୂର୍ଣ୍ଣ ଭାବରେ ସ୍ୱାଧୀନତାକୁ ବଜାୟ ରଖି ଉନ୍ନତି ପଥରେ ଗତି କରି ଚାଲିଛି । ଏହାଦ୍ୱାରା ଆନ୍ତର୍ଜାତିକ କ୍ଷେତ୍ରରେ ଭାରତ ବଡ଼ ଆସନ ଲାଭ କରିଛି ଓ ମୋର ପୂର୍ଣ୍ଣ ଆଶା ଯେ ଭାରତ ପ୍ରତ୍ୟେକ ଶାନ୍ତିକାମୀ ଦେଶପାଇଁ ଗୋଟିଏ ଆଦର୍ଶ ହୋଇ ରହିବ ।

ଆମ ଦେଶ ଭିତର କଥା ବିଚାରକୁ ଗଲେ ଜନସାଧାରଣଙ୍କ ଉପକାର ନିମନ୍ତେ ଦିନକୁ ଦିନ ଶାସନ ପରିଚାଳନାରେ ଅନେକ ପରିବର୍ତ୍ତନ ଘଟୁଛି । ଏହି ଅଳ୍ପଦିନର କଥା କହିବାକୁ ହେଲେ ଦେଶର ଧାନଚାଉଳ ଓ ଅନ୍ୟାନ୍ୟ ଖାଦ୍ୟ ଜିନିଷର ଡି-କଣ୍ଟ୍ରୋଲ ବା ବିନିୟନ୍ତ୍ରଣ ଗୋଟିଏ ପ୍ରଧାନ ଘଟଣା । ବର୍ଷ ବର୍ଷ ଧରି ବ୍ରିଟିଶ ସରକାର ଥିବା ଅମଳରୁ ଆମେ ସେହି କଟକଣାର ସମ୍ପୂର୍ଣ୍ଣାଧୀନ ହୋଇ ରହିଥିଲୁ ଆଜି ସେଥିରୁ ଆମେ ମୁକ୍ତ ଓ ଆମ ବଜାର ଆଜି ସ୍ୱାଧୀନ । କଣ୍ଟ୍ରୋଲ ଫଳରେ ଗରିବ, ଗରିବଙ୍କ ପଇସାରେ ଧନୀ ବ୍ୟବସାୟୀମାନେ ଏକଚାଟିଆ ବେପାରର ସୁଯୋଗ ନେଇ ଯଥେଷ୍ଟ ଫାଇଦା ଉଠାଉଥିଲେ କାରଣ କେତେ କଷ୍ଟ ହେଲେ ସୁଦ୍ଧା ଜନସାଧାରଣଙ୍କ ପକ୍ଷେ ସେମାନଙ୍କୁ ଆଶ୍ରା କରିବା ଛଡ଼ା ଅନ୍ୟ ଉପାୟ ନଥିଲା । ବର୍ତ୍ତମାନ ଖୋଲାବଜାରରେ ଧନୀ ବ୍ୟବସାୟୀମାନେ ବୁଝିବା ଉଚିତ ଯେ ସେମାନଙ୍କର ବେପାରର ଉନ୍ନତି ବା ଅବନତି ସାଧାରଣ କିଣିଖିଆଙ୍କ ଉପରେ ନିର୍ଭର କରେ ଓ ସେହି ଜନସାଧାରଣଙ୍କ ସ୍ୱାର୍ଥକୁ ଜଗିଲେ ନିଜର ଉନ୍ନତି ସମ୍ଭବ । ଜନସାଧାରଣ ମଧ୍ୟ ତାଙ୍କର ଦାୟିତ୍ୱ ବୁଝି ଏ ପରିସ୍ଥିତିର ଉପଯୁକ୍ତ ସୁଯୋଗ ନିଅନ୍ତୁ ଓ ସରକାର ଯେପରି ପୁନର୍ବାର ଏଥିରେ ହସ୍ତକ୍ଷେପ କରିବାକୁ ବାଧ୍ୟ ନ ହୁଅନ୍ତି ତାହା ଜଗନ୍ତୁ । ଏହି ବିନିୟନ୍ତ୍ରଣ ଦ୍ୱାରା ଆମ ଦେଶର ଉତ୍ପାଦନଶକ୍ତି ମଧ୍ୟ ବଢ଼ିବାର ଆଶା କରାଯାଏ । କାରଣ ଖୋଲା ବଜାରରେ ପ୍ରତିଯୋଗ ପ୍ରଥା ଅବଲମ୍ବନ କରାଯିବ ଓ ଚାଷୀ ଓ ବେପାରୀମାନେ ନିଜ ନିଜ ମଧ୍ୟରେ ସ୍ନେହ ସହାନୁଭୂତି ଆଣିବାକୁ ବାଧ୍ୟ ହେବେ । ଏପରି ଗୋଟିଏ ବଡ଼ ସମସ୍ୟାର ସମାଧାନରେ ଆମ ଦେଶ ନିଶ୍ଚୟ ଆନନ୍ଦ ଅନୁଭବ କରିବ ।

ଆମ ଓଡ଼ିଶା କଥା କହିବାକୁ ଗଲେ ଏ ବର୍ଷର ଗୋଟିଏ ପ୍ରଧାନ ଚିନ୍ତା ହେଉଛି ରାଉରକେଲାରେ ଇସ୍ପାତ-କାରଖାନା ପ୍ରତିଷ୍ଠା, ଏହାଦ୍ୱାରା ଆମ ରାଜ୍ୟ ଶିଳ୍ପ ଦିଗରେ କେତେ ଯେ ଆଗେଇବ ତାହା ମୁଁ କହିବା ଅନାବଶ୍ୟକ ।

ଜନ ପାଇଁ ସମାନ୍ୟ କଥା ସ୍ୱୀକାର କରିବାକୁ ପଡ଼ୁଥିବ । ମୁଁ ଜାଣେ ଯେ ଅତୀତ ସେହି ଅହିଂସାର ବେଳେବେଳେ ପୃଥିବୀକୁ ବହୁ ... ସବୁ ଶ୍ରେଣୀର ଲୋକଙ୍କ ମନରେ ବିଶେଷ ଆନନ୍ଦ ପ୍ରକାଶ ପାଇଛି ଓ ମୁଁ ଖୁସି ହୋଇଛି ଯେ ସ୍ୱାଧୀନଦେଶର ସବୁ ଶ୍ରେଣୀର ଲୋକଙ୍କ ଉନ୍ନତିର ଯୋଜନାମାନଙ୍କରେ ଭାଗ ନେବା ଦରକାର । ଏହି ସ୍ୱାଧୀନତା-ଗାଇଛି । ବର୍ତ୍ତମାନ ପ୍ରତ୍ୟେକ ଦେଶବାସୀ ଆମର ଉନ୍ନତିର ଯୋଜନାମାନଙ୍କରେ ଭାଗ ... ଉତ୍ସବରେ ଦେଶବାସୀଙ୍କ ପ୍ରତି ମୁଁ ଏହା ନିବେଦନ କରି ଶୁଭେଚ୍ଛା ଜଣାଉଅଛି । ଇତି ।

ଭୁବନେଶ୍ୱର ରାଜଧାନୀ
୧୫ ଅଗଷ୍ଟ, ୧୯୫୪

ସୁନାରାମ ସୋରେନ୍

---

## ସ୍ୱାସ୍ଥ୍ୟଉପମନ୍ତ୍ରୀ ଶ୍ରୀମତୀ ବସନ୍ତମଞ୍ଜରୀ ଦେବୀଙ୍କ ବାର୍ତ୍ତା

ଯେଉଁମାନେ ଜାତିର ପ୍ରିୟ ଜନକଙ୍କ ପ୍ରବଳ ଉଦ୍ୟମରେ ଯୋଗଦାନ କରି ଏହି ବର୍ଷ ଅହିଂସ ବିଜୟ ଲାଭ କରିଅଛନ୍ତି, ଏହି ସ୍ୱାଧୀନ ଭାରତର ସପ୍ତମ ବାର୍ଷିକରେ ମୁଁ ସେମାନଙ୍କୁ ଓ ବିଜୟଲବ୍ଧ ସ୍ୱାଧୀନତାକୁ ବର୍ତ୍ତମାନ ରକ୍ଷା କରୁଥିବା ବୀରମାନଙ୍କୁ ମୋର ଭକ୍ତି ତଥା ଆନ୍ତରିକ ଶ୍ରଦ୍ଧା ଜ୍ଞାପନ କରିବାର ସୁଯୋଗ ଲାଭ କରି ଆନନ୍ଦିତ ହୋଇଅଛି ।

ଆମମାନଙ୍କ ଜାତିର ଐତିହ୍ୟ ପୁରାଣଗତ କାଳରୁ ସମସ୍ତଙ୍କର ବିସ୍ମୟ ଉତ୍ପାଦନ କରିଅଛି । ଆମମାନଙ୍କ ପ୍ରାଚୀନ ଓ ଗୌରବମୟ ଇତିହାସ ଓ ପରମ୍ପରା, ରାଜନୈତିକ ସ୍ୱାଧୀନତା ନିମନ୍ତେ ଅଯୁଦ୍ଧ ହୋଇଥିବା ଆମମାନଙ୍କର ମହାନ୍ ଓ ପ୍ରାଚୀନ ଅହିଂସାନୀତି, ପ୍ରଥମ ସାଧାରଣ ନିର୍ବାଚନରେ ଆମମାନଙ୍କର ଅବାଧ ବିଜୟ, ଅର୍ଥନୈତିକ ଓ ବହୁମୁଖୀ ସାମାଜିକ ସମସ୍ୟାମାନଙ୍କ ସମାଧାନରେ ଆମମାନଙ୍କର ଗଭୀର ସଫଳତା ଏବଂ ଅନ୍ୟାନ୍ୟ ଜାତିମାନଙ୍କ ସହିତ ସୌହାର୍ଦ୍ଦ୍ୟ ସ୍ଥାପନ ନିମନ୍ତେ ଆମମାନଙ୍କ କର୍ତ୍ତୃକ ଅନୁସୃତ ଅକ୍ଳାନ୍ତ ଓ ନ୍ୟାୟାନୁମୋଦିତ ପନ୍ଥା ଉପରେ ସମଗ୍ର ସଭ୍ୟ ଜଗତର ବିସ୍ମୟ ବିଜଡ଼ିତ ଦୃଷ୍ଟି ନିବଦ୍ଧ ରହିଅଛି ।

୧୯୪୭ ମସିହା ଅଗଷ୍ଟମାସ ୧୫ ତାରିଖଠାରୁ ଜାତୀୟ ଜୀବନର ଅଧିକାଂଶ କ୍ଷେତ୍ରରେ ଆମ୍ଭେମାନେ ଅନେକ ପରିବର୍ତ୍ତନ ଲକ୍ଷ କରୁଥାଉଁ ଏବଂ ଏହି ସ୍ୱଳ୍ପ ସମୟ ମଧ୍ୟରେ ମଧ୍ୟ ଏହି ତରୁଣ ଓ ଶକ୍ତିଶାଳୀ ଜାତିର ଗଠନମୂଳକ କାର୍ଯ୍ୟକଳାପର ନାନା ନମୁନା ଆମମାନଙ୍କର ଗୋଚରୀଭୂତ ହୋଇଅଛି । ଉଦ୍ଦେଶ୍ୟଟିକୁ ସାଧନ କରିବା ପାଇଁ ବହୁଳ ପ୍ରଚଣ୍ଡ କାର୍ଯ୍ୟ ବାକି ରହିଥିଲେ ହେଁ ଏପର୍ଯ୍ୟନ୍ତ ଆମ୍ଭେମାନେ ଯାହା ସାଧନ କରିଥାଉଁ ତାହା ଭବିଷ୍ୟତ ବଂଶଧରମାନଙ୍କ ଦ୍ୱାରା ଅବଶ୍ୟ ପ୍ରଶଂସିତ ହେବ ।

ମୁଁ ବର୍ତ୍ତମାନ କେବଳ ସର୍ବଶକ୍ତିମାନ ପରମେଶ୍ୱରଙ୍କ କରୁଣା ଭିକ୍ଷା କରୁଛି । ଯେଉଁ ସ୍ୱାଧୀନତା ଦୁଃଖଦୈନ୍ୟ ଦଶା ନିର୍ଯ୍ୟାତନ ଓ ତ୍ୟାଗର ମଧ୍ୟରେ ଏତେ ସାହସିକତାରେ ଅର୍ଜିତ ହୋଇଅଛି, ତାର ସୁରକ୍ଷା ନିମନ୍ତେ ଆମ୍ଭେମାନେ ରହିଥାଉଁ । ଜାତୀୟ ସମୃଦ୍ଧି ଓ ମଙ୍ଗଳ ସୂଚକ ଲକ୍ଷ୍ୟରେ ଉପନୀତ ହେବାରେ ସେ ଆମମାନଙ୍କର ସହାୟ ହେଉନ୍ତୁ ।

ଜୟହିନ୍ଦ୍

ବସନ୍ତମଞ୍ଜରୀ ଦେବୀ

---

# ଭବିଷ୍ୟତର ରୂପରେଖ

## ସ୍ୱାଧୀନ ଭାରତ କେଉଁ ବାଟରେ ଚାଲିଛି

ଆଜ ଭାରତ ସ୍ୱାଧୀନ ହେବାର ୭ ବର୍ଷ ପୂରି ଅଷ୍ଟମ ବର୍ଷ ଆରମ୍ଭ ହେଉଛି। ଯେଉଁମାନେ ସ୍ୱାଧୀନତା ଆଣିବାରେ ଅଗ୍ରଣୀ ହୋଇଥିବେ ଶାସନ ଆଜ ତାଙ୍କର ହାତରେ। କଂଗ୍ରେସ ମହାସଭାର ଆରମ୍ଭ ଦିନରୁ ସରକାରକୁ ଖୁଣିବା ଓ ସମାଲୋଚନା କରିବାର ଯେଉଁ ନୀତି ଆରମ୍ଭ ହୋଇଯାଇଛି, ଆଜ ତାହାର ସଙ୍କଟ ସ୍ୱା ସ୍ୱୟଂ କଂଗ୍ରେସ ଭୋଗ କରୁଛି। ଯାହା ହୋଇସାରିଛି ତାକୁ କେହି ଚାହୁଁ ନାହାନ୍ତି, ଯାହା ହୋଇ ନ ପାରିଛି ବା ହେବାକୁ ଅଛି ସମସ୍ତଙ୍କ ଦୃଷ୍ଟି ତାହାରି ଉପରେ। ୧୯୪୮ ଖ୍ରୀଷ୍ଟାବ୍ଦ ପୂର୍ବରୁ ଖୁବ୍ ଅଳ୍ପ ଲୋକ ଆଶା କରି ପାରୁଥିଲେ ଯେ, ଗଡ଼ଜାତ ରାଜତନ୍ତ୍ର ସମୂଳେ ନଷ୍ଟ ହୋଇଯିବ। ଗଡ଼ଜାତ ପ୍ରଜାମାନେ ସେ କାଳ ନିରଙ୍କୁଶ କ୍ଷମତାର ସ୍ୱପ୍ନ ଦେଖୁଥିଲେ ତାହା ନୁହେ; ସେ କ୍ଷମତା ଭୋଗ କରିବାକୁ ଉଚ୍ଛନ୍ନ ପଡ଼ି ଯାଉଥିଲେ ଓ ସ୍ୱତନ୍ତ୍ର ପୁଲିସ ମଧ୍ୟ ରଖିଥିଲେ। ଯାହା ହୋଇଗଲା, ତତ୍‌ମନ୍ତ୍ରୀ ରାଜନୈତିକମାନେ ମଧ୍ୟ ସେତେ ହେ ଉଦାରକ ବୋଲି ଆଶା କରି ପାରି ନ ଥିଲେ। ଆମ ଓଡ଼ିଶାରେ ପ୍ରଦେଶ ଓ ଗଡ଼ଜାତ ମଧ୍ୟରେ କେତେକ କ୍ଷେତ୍ରରେ ଶାସନର ସମନ୍ୱୟ ରଖିବାକୁ ଆଶା ପୋଷଣ କରାଯାଉଥିଲା। ମାତ୍ର ଗଡ଼ଜାତର ଭବିଷ୍ୟତର ନିର୍ଦ୍ଦିଷ୍ଟ ରୂପରେଖ ବୋଧହୁଏ କାହାରି ଜଣଙ୍କ ମସ୍ତିଷ୍କ ତାହାକୁ ଧରି ନ ଥିଲା। ସେ ଆସିଲେ, ଗଡ଼ଜାତ ପ୍ରଜାମାନଙ୍କୁ ଏକାଠି କରି ଦେବା ପୂର୍ବରୁ ଓ ମନ ଅଧସଣ୍ଟା ମଧ୍ୟରେ ଏପରି ଅବସ୍ଥା ସୃଷ୍ଟି ହୋଇଗଲା ଯେ, ପ୍ରତ୍ୟେକ ପ୍ରଜା ନିଜେ ହାତ କାଟି ପ୍ରାଣ୍ୟଣ୍ଟିମାନ ସର୍ଦ୍ଦାର ବଲ୍ଲଭଭାଇ ପଟେଲଙ୍କ ହାତରେ ସମର୍ପଣ କରିଦେଲେ। କିନ୍ତୁ ଅଧିକଷଣ୍ଡରେ ମିଶ୍ରଣ ହେବା ପୂର୍ବରୁ ଆରମ୍ଭ ହେଲା ଆନ୍ଦୋଳନ ସମାନ ଉଲଟା ଧରଣରେ। ଯେଉଁମାନେ ପ୍ରଜାଙ୍କୁ ଛଡ଼ିବାକୁ ଲୁଚକପଟି ଆନ୍ଦୋଳନ କରୁଥିଲେ ସେମାନେ ବଡ଼ ପାଟିରେ ଚିତ୍କାର କରିବାକୁ ଆରମ୍ଭ କଲେ ଯେ, ରାଜାଙ୍କ ଅମଳରେ ରାଜ୍ୟ ଭଲ ଚାଲୁଥିଲା।

### ନାଟକର ପୁନରାବୃତ୍ତି

ଜମିଦାରୀ ଉଚ୍ଛେଦରେ ପୁଣି ସେହି ନାଟକର ପୁନରାବୃତ୍ତି ହେଲା। ୨୦ ବର୍ଷରୁ ଅଧିକ କାଳ ହେଲା ଏ ଦେଶରେ ଆନ୍ଦୋଳନ ଚାଲି ଆସିଥିଲା ଜମିଦାରୀ ପ୍ରଥା କିପରି ଲୋପ ହେବ। ଜମିଦାରୀ ପ୍ରଥା କିନ୍ତୁ ଲୋପ ହେବା ପରେ ଲୋକଙ୍କ ଦୃଷ୍ଟି ହଠାତ୍ ଯାଇ ପଡ଼ିଲା ଅଞ୍ଚଳ ଅଧିକାରୀଙ୍କ ଖୁଣିଖାଣି ଦୋଷ ଉପରେ। ଏବେ ଦିନର ଏକେ ବଡ଼ ସଂସ୍ଥା ଉଠିଗଲା; ପରେ ଯାହା ଆସିବ, ତାହାକୁ ସଜାଡ଼ିବାକୁ ସମୟ ଦରକାର। ସେ ସମୟ ମିଳିଲା ନାହିଁ। ଯେଉଁମାନଙ୍କ

ହାତରେ ଶାସନର ଡୋର ଅଛି, ସେମାନଙ୍କର ଲକ୍ଷଣ ଏଣି ଦେଖିଲ । ଜମିଦାର ଉଠିବା ଅଭାବ ଶାପ ଲଗାଇବାକୁ ସେମାନେ ବହୁକାଳ ଯେପରି ବଂଶ ଓ ଶକ୍ତି ରଖିଥିଲେ, ଜମିଦାରି ଉଠିବା ପରେ ଅନ୍ତତଃ କେତେ ଦିନ ଶାନ୍ତିରେ ରହିବା ସେମାନଙ୍କର ଭଲ ଆଶା ଥିଲା । ସେ ଆଶା କିନ୍ତୁ ମିଳିଲା ନାହିଁ । ନିଃଶ୍ୱାସ ମାରିବାକୁ ବସିଲେ ବେଳକୁ ଜାଣିଲେ, ଧଡ଼ ମଣ୍ଡଳୁ ତଳାଉ ଉଠିଲା, ଜମିଦାରି ଉଠିଯିବା ପରେ ପ୍ରଜାଙ୍କ ଅବସ୍ଥା ଅଧିକ ଖରାପ ହୋଇଛି ।

ଶୁଦ୍ଧା ଜମିଦାରଙ୍କ ସମ୍ପର୍କରେ ଯେପରି, ଅନ୍ୟ ସବୁ ଅନେକାଂଶର ଶ୍ରେଷ୍ଠ ଶ୍ରେଷ୍ଠ କାର୍ଯ୍ୟରେ ମଧ୍ୟ ସେହିପରି । ଯେଉଁମାନଙ୍କ ହାତରେ କର୍ତ୍ତୃତ୍ୱ ରହିଛି, ତାଙ୍କୁ ନିଃଶ୍ୱାସ ମାରିବାକୁ ବେଳ ନାହିଁ । କୌଣସି କାର୍ଯ୍ୟ କଲେ ବେଳେ ଧନ୍ୟବାଦ ପାଇବାର ମଧ୍ୟ ଆଶା ନାହିଁ । ପ୍ରଦେଶର ଓ ଉତ୍କଳ ମାନେ ଏବେ ଯେଉଁ ଯୋଜନା ଦେଖିଛି ସୁବିଧା, ତାହା ଅତନ୍ତ ଦେଖିବା ବେଳେ ଯେଉଁ ବୈଜ୍ଞାନିକ ଉଦ୍ଭାବନର ତାହା ସମ୍ପୂର୍ଣ୍ଣ ମନେ ଥିବ । ଆମ୍ଭେ କେବଳ ସନ୍ତୋଷ ଆଶା ନାହିଁ; କିନ୍ତୁ ସେହି ସନ୍ତୋଷ ଅନ୍ୟ ରୂପରେ ଅଭାବ ହୋଇଛି । କଏ କହୁଛି, ଯୋଜନା କାର୍ଯ୍ୟ ସରକାରର ଏତେ ବଳବତ୍ ନାହିଁକି ହେଉଛି ? ଆଉ କଏ କହୁଛି, ଲୋକନେତା ସବୁ ଗୋଳମାଳ କରି ଦେଉଛନ୍ତି । କୃଷକ ସମାଲୋଚନା କରୁଛି, ଜଳ-ସେଚନ କରବ, ଭଲ; ବିଦ୍ୟୁତ୍‌ଶକ୍ତି ଦେବ, ଉତ୍ତମ; କିନ୍ତୁ ତା ପାଇଁ ଟଙ୍କା କାହିଁରୁ ପଡ଼ିବ ? ଚତୁର୍ଥ ଭଣ୍ଡ ଦାବାର କେ କହୁଛି, ମହାନଦୀରେ ବନ୍ଧ ପକାଇଲେ କଅଣ ହେବ; ବ୍ରାହ୍ମଣୀ ତ ତେଣେ ଅଛି । ଉତ୍ତମା କଅଣ ଆମର କୋଟିଏ ଟଙ୍କାର ଜଳପ୍ରପାତ ? ବାଗର ପାଇଁ ଯୋଜନା ହେଉ; ଖଣ୍ଡାଧାର ପାଇଁ ମଧ୍ୟ ହେଉ । ସବୁଠାରୁ ମଧ୍ୟ ସମାଲୋଚକ ବସି ଟିପ୍ପଣୀ କରୁଛନ୍ତି, ବନ୍ଧର ସୀମା ମିଳବ; ଆଗରୁ ଶିଳ୍ପ ବସାଇବାର ବ୍ୟବସ୍ଥା ନ ହେଲେ ଏ ବିଦ୍ୟୁତ୍ ଶକ୍ତିଗୁଡ଼ାକ ଜାଳିଆ ହୋଇଯିବ । ସମ୍ବଲପୁରର ପାର୍ବତ୍ୟ ଜମିରେ ଜଳସେଚନର କିପରି ବ୍ୟବସ୍ଥା ହେଲା, ୨ । ୩ ବର୍ଷ ବର୍ଷା ନ ହେଲେ କଅଣ ହେବ ?

ଏହିପରି ବିତଣ୍ଡା ଚାଲିଛି ଓ ଆହୁରି ବି ଅନେକ ଦିନ ଚାଲିବ । ତାହାର କାରଣ, ବିଦେଶୀ ଶାସନରେ ଏ ଦେଶ ଅନ୍ତଃସାରଶୂନ୍ୟ ହୋଇଯାଇଛି; ସମାଜର ଶରୀରରେ ସବୁପ୍ରକାର ରୋଗ ଘୋଟି ଯାଇଛି । ସେ ଟିଏ ରୋଗ ଭଲ ହେଉ ନ ହେଉଣୁ, ଆଉ କେତୋଟି ଉତ୍କଟ ହୋଇ ଉଠୁଛି । ଏ ସବୁଗୁଡ଼ିକ ରୋଗ ପୁଣି ବହୁ ଦିନର ଓ ଅସାଧ୍ୟସାଧ । ପୁରସ୍କାର ଓ ସାର୍ଟିଫିକେଟର ଆଶା ନ ରଖି ଡାକ୍ତରମାନଙ୍କୁ ପ୍ରାଣପଣ ଚେଷ୍ଟା କରିବାକୁ ହେଉଛି ।

ସୁଖର କଥା, ଭାରତର ଭାଗ୍ୟଡୋର ଏବେ ଯେଉଁମାନଙ୍କ ହାତରେ ଅଛି, ସେମାନେ ବର୍ତ୍ତମାନର ସମାଲୋଚନାରେ ବିବ୍ରତ ନ ହୋଇ ଭାରତର ଭବିଷ୍ୟତରେ ଆସ୍ଥା ରଖି, ଆଗକୁ ଖୁବ୍ ଅଗ୍ରସର ହେଉଛନ୍ତି । ଶ୍ରୀ ଜବାହରଲାଲ, ଆଚାର୍ଯ୍ୟ ବିନୋବା ପ୍ରମୁଖ ମୁଖ୍ୟ ଜନନାୟକମାନଙ୍କ କଥା ଓ କାର୍ଯ୍ୟକୁ ଲକ୍ଷ କଲେ ଭବିଷ୍ୟତର ଯେଉଁ ଚିତ୍ର ଆଖି ଆଗରେ ନାଚୁଛି, ତାହାର କେତେକ ସୂଚନା ଏହି ପ୍ରବନ୍ଧରେ ଦିଆଯାଇଛି ।

କେତେ ଦିନରେ ଏ କଳ୍ପନା କାର୍ଯ୍ୟରେ ଫଳିବ, ସେ ବିଷୟରେ ନାନା ମୁନିଙ୍କର ନାନା ମତ ହେବା ସ୍ୱାଭାବିକ । ମନେ ହେଉଛି, ୧୦ ବର୍ଷ ପରେ ଆମର କଳ୍ପିତ ସ୍ୱରାଜ୍ୟ ପୂର୍ଣ୍ଣାବୟବ ହେବ । ଆଉ ବହୁ ଅଧିକ ସମୟ ନ ଲାଗିପାରେ । ଲୋକଙ୍କ ଭିତରେ ବର୍ତ୍ତମାନ ଯେଉଁ ଅସନ୍ତୋଷ, ସହଯୋଗର ଅଭାବ ଓ ଉଦାସୀନତା ଦେଖାଯାଉଛି, ତାହା ଯଦି କୌଣସି ଐନ୍ଦ୍ରଜାଳିକ ଯାଦୁକରର ହାତ ଲାଗି ଦୂର ହୋଇ ଯାଇପାରେ, ତାହାହେଲେ ୧୦ ବର୍ଷରୁ କମରେ ମଧ୍ୟ

ଲକ୍ଷ୍ୟ ହାସଲ ହୋଇପାରି ପାରିବ । ତେଣୁ ଏଠାରେ ଲକ୍ଷ୍ୟ ସାଧନର ସମସ୍ତ ଉପରେ ଜୋର ଦିଆ ନ ଯାଇ, ଯେଉଁ ଲକ୍ଷ୍ୟ ଉଦ୍ଦେଶ୍ୟରେ କାର୍ଯ୍ୟ ଚାଲିଛି, ତାହା ମୋଟାମୋଟି ସୂଚାଇ ଦିଆ ହେଉଛି ।

## ଭେଦାଭେଦ ରହିବ ନାହିଁ

ସବୁଠାରୁ ବଡ଼ କଥା, ଭାରତରେ ଗତ ଶହେବର୍ଷ ଭିତରେ ଯେଉଁ ନୂତନ ଜାତିଭେଦର ସୃଷ୍ଟି ହୋଇଛି, ତାହା ରହିବ ନାହିଁ । ଆମ ଦେଶରେ ସ୍ପୃଶ୍ୟ ଅସ୍ପୃଶ୍ୟ ବୋଲି ଧର୍ମ ନାମରେ ଯେଉଁ ଭେଦାଭେଦ ଅଛି, ସେ ବିଷୟରେ ବହୁ ଆଲୋଚନା ହୋଇ ସାରିଛି । ଏ ଯୁଗରେ ତାହାକୁ ତ କେହି ପସନ୍ଦ କରିବେ ନାହିଁ; ପୁରାଣ ଯୁଗରେ ମଧ୍ୟ ଏପରି ଭେଦାଭେଦକୁ କେହି ପସନ୍ଦ କରୁ ନ ଥିଲେ । ତାହାର ପ୍ରମାଣ ଯେ ଖାଲି ପୁରାଣ ଓ ସ୍ମୃତିରେ ଅଛି, ତାହା ନୁହେଁ; ସମଗ୍ର ଭାରତରେ, ବିଶେଷତଃ ଓଡ଼ିଶାର ଗାଁଗହଳରେ ପ୍ରତିଦିନ ଏହାର ପ୍ରତ୍ୟକ୍ଷ ପ୍ରମାଣ ମିଳୁଛି । ଆଜି ମଧ୍ୟ ଗାଁ ପୋଖରୀ ଘାଟରେ ବ୍ରାହ୍ମଣ ଓ ଶୂଦ୍ର ସ୍ତ୍ରୀଲୋକେ ଏକାଠି ଗାଧୋଉଛନ୍ତି । ବ୍ରାହ୍ମଣର ଶ୍ରେଷ୍ଠ ଧର୍ମକାର୍ଯ୍ୟ ଉପନୟନରେ ବ୍ରାହ୍ମଣ ହାଡ଼ିଛୁଆଁ ମାନୁ ନାହିଁ । ଯାତ୍ରା, ପୁଣ୍ୟ ପର୍ବ, ହାଟ ବାଟରେ ସ୍ପୃଶ୍ୟାସ୍ପୃଶ୍ୟ ଧରାଯିବ ନାହିଁ ବୋଲି ସ୍ମୃତିରେ ଅଛି, କାର୍ଯ୍ୟରେ ବି ଚଳୁଛି । ସବୁଠାରୁ ବଡ଼ କଥା, ଗ୍ରାମ୍ୟ ଜୀବନରେ ଧନକୁ ଧରି ସମ୍ମାନର ଇତରବିଶେଷ ହେଉ ନାହିଁ । ବ୍ରାହ୍ମଣ ମାଲିକ ଓ ବାଉରୀ ମୂଲିଆ କାମ ବେଳେ ଓ କାମ ପରେ ସମାନ ସ୍ତରର ଲୋକ ଭଳି ଚଳନ୍ତି । ଏ ଚଳଣିରେ ଯେଉଁଠାରେ ଅଭାବ ରହି ଯାଇଛି, ତାକୁ ଆମେମାନେ ଶ୍ୟେନଦୃଷ୍ଟିରେ ଚାହିଁଥାଉଁ; କିନ୍ତୁ ଶିକ୍ଷିତ ଅଶିକ୍ଷିତଙ୍କ ଭିତରେ ଓ ଶିକ୍ଷିତ ଲୋକଙ୍କର ନିଜ ନିଜ ଭିତରେ ଯେଉଁ ଜାତିଭେଦ ସୃଷ୍ଟି ହୋଇଛି, ତାକୁ ଆମେ ଦେଖି ନ ଦେଖିଲା ପରି ରହୁଥାଉଁ । ବଡ଼ ଅଫିସର, ସାନ ଅଫିସର, କିରାଣି ଓ ଚପରାଶି ଯେ ଗୋଟିଏ ଜାତି ଓ ଗୋଟିଏ ଦେଶର ଲୋକ, ଏ କଥା ବାହାରର ଲୋକେ ଆମ ଦେଶକୁ ଆସି ହଠାତ୍ ବିଶ୍ୱାସ କରି ପାରନ୍ତି ନାହିଁ । ଅନ୍ୟ ଦେଶମାନଙ୍କରେ ବ୍ୟକ୍ତିଗତ ସ୍ତରରେ ମଧ୍ୟ କାମ ପରେ ନିଜ ମାଲିକ ସଙ୍ଗେ କ୍ଲବ୍‌କୁ ଯାଆନ୍ତି, ଆମ ମଫସଲରେ ଯେପରି ମାଲିକ ଓ ମୂଲିଆ ଏକ ସଙ୍ଗେ ସଂକୀର୍ତ୍ତନ କରନ୍ତି ଓ ଭାଗବତ ଘରେ ଏକାଠି ହୁଅନ୍ତି । କିନ୍ତୁ ଶିକ୍ଷିତ ସମାଜର ଜାତିଭେଦ ଅଫିସରୁ ଘରକୁ ବ୍ୟାପିଛି ଓ ଅଫିସର ଓ କିରାଣିଙ୍କଠାରୁ ସେମାନଙ୍କର ସ୍ତ୍ରୀପିଲାଙ୍କୁ ମଧ୍ୟ ଘାରୁଛି । ତାହା ସର୍ବପ୍ରଥମେ ଲୋପ ହେବ । ପାଶ୍ଚାତ୍ୟ ଢଙ୍ଗ, ପାଶ୍ଚାତ୍ୟ ଆଦବ କାଇଦା ଥିବା ପର୍ଯ୍ୟନ୍ତ ଦେଶରେ ସମାନତା ଆସିବା ଅସମ୍ଭବ । ଶ୍ରୀ ଜବାହରଲାଲ ନେହେରୁ ସ୍ଥାନ, କାଳ, ପାତ୍ରକୁ ଖାତିର ନ କରି ବରାବର ଏହି କଥାର ପୁନରାବୃତ୍ତି କରୁଛନ୍ତି । ଶିକ୍ଷିତ ଲୋକଙ୍କର ରୋଗ ଏପରି ଉତ୍କଟ ହୋଇଛି ଯେ, ନେହେରୁଙ୍କ ପରି ଗୁଣିଆର ମନ୍ତ୍ର ବି ଆଜଯାଏ କାର୍ଯ୍ୟ କରି ନାହିଁ । କିନ୍ତୁ ସେ ଅକାଟ୍ୟ ମନ୍ତ୍ରର ଫଳ ନିଶ୍ଚୟ ଫଳିବ । ଯେତେ ବେଳ ଲାଗିବ ବୋଲି ଲୋକେ କହୁଛନ୍ତି, ସେଥିରୁ ଢେର କମ ବେଳ ଲାଗିବ ।

## ଇଂରେଜୀ ଭାଷା ଯିବ

ଇଂରେଜୀ ଭାଷାଟି ମଧ୍ୟ ସମୂଳେ ଯିବା ଦରକାର । ଇଂରେଜ ଲୋକଙ୍କ ପ୍ରତି ଘୃଣାରେ ବା ତାଙ୍କ ଭାଷା ପ୍ରତି ଅସୂୟାରେ କେହି ଏପରି କହୁ ନାହାନ୍ତି । ଇଂରେଜୀ ଭାଷା ଯିବ; କାରଣ ତାହା ରହି ନ ପାରେ । ସେ ଯେତେ ଦିନ ଥିବ, ଇଂରେଜୀ ଜାଣିଥିବା ଓ ଇଂରେଜୀ ନ ଜାଣିଥିବା ଯୋଡ଼ିଏ ଜାତି ସେତେ ଦିନ ରହିଥିବେ ଓ ନ ଜାଣିଥିବା ଲୋକେ ସେତେଦିନ ଅବହେଳିତ ହେଉଥିବେ । ଭାରତର ସବୁ ଲୋକେ ଯଦି ଇଂରେଜୀ ଜାଣିବାର ସମ୍ଭାବନା ଥାଆନ୍ତା, ତେବେ ତାହା ସ୍ୱତନ୍ତ୍ର କଥା ।

ଇଂରେଜୀ ଭାଷା ମଞ୍ଚରେ ଯେଉଁ ସଂସ୍କୃତି ଓ ପରମ୍ପରା ଅଛି, ତାହା ଇଉରୋପୀୟ ସଂସ୍କୃତି ଓ ପରମ୍ପରାଠାରୁ ସମ୍ପୂର୍ଣ୍ଣ ଭିନ୍ନ । ଆମ ସଂସ୍କୃତି ଏବେ ସୁଦ୍ଧା ଓ ଏତେ ଦୃଢ଼ ଯେ ତାକୁ ଏକାବେଳକେ ଲୋପ କରି ଦେଇ ଇଂରେଜୀ ସଂସ୍କୃତି ଅନୁକରଣ କରାଯିବା ସମ୍ଭାବନା ନ୍ୟୂନ । ଦେଶରେ ଶହକେ ୫ ଜଣ ମଧ୍ୟ ଇଂରେଜୀ ଭାଷାରେ ବ୍ୟୁତ୍ପନ୍ନ ହୋଇଛନ୍ତି ବୋଲି କୁହାଯାଇ ନ ପାରେ । ଯେଉଁମାନେ ଇଂରେଜୀ ଜାଣିଛନ୍ତି ବୋଲି ମନେ ମନେ ଭାବୁଛନ୍ତି; ସେମାନଙ୍କ ମଧ୍ୟରେ ଖୁବ ଅଳ୍ପ ଲୋକେ ଜଣ ଅବା ଇଂରେଜୀ ସାହିତ୍ୟର ଇତିହାସ ଓ ଜାତିର ସଂସ୍କୃତି ଜାଣିଥିବେ । ଭାଷାର ଇତିହାସ ଓ ସଂସ୍କୃତି ନ ଜାଣି ଭାଷା ପଢ଼ିଲେ ତାହା ଭାଷା ହୋଇ ରହିବ ନାହିଁ, ବାହାରେ ଖୋଳ ହୋଇ ରହିବ । ଇଂରେଜୀ ଭାଷାର ପରମ୍ପରା ସୃଷ୍ଟି ଖ୍ରୀଷ୍ଟିୟାନ ଧର୍ମରେ । ସମଗ୍ର ଲୋକସାଧାରଣ ସେ ଧର୍ମରେ ଦୀକ୍ଷିତ ହୋଇ ସେ ଧର୍ମର ମୂଳ ବାଇବଲ ନ ଜାଣିବା ପର୍ଯ୍ୟନ୍ତ ଇଂରେଜୀ ଭାଷାର ଶୈଳୀ ଧରି ପାରିବେ ନାହିଁ । ଜୀବନର ଅର୍ଦ୍ଧାଧିକ ସମୟ ଶିକ୍ଷା ତପସ୍ୟା କରି ସାହେବ ଭୁଲୁଛନ୍ତି ଆମ ଦେଶର ମୁଷ୍ଟିମେୟ ଲୋକ ଇଂରେଜୀରେ କଥାବାର୍ତ୍ତା କରି ପାରୁଛନ୍ତି । ସେହିମାନେ ଅନ୍ଦୋଳନ ଲଗାଇଛନ୍ତି ଇଂରେଜୀ ଭାଷା ରହୁ । ଶାସକଗୋଷ୍ଠୀ ଗଣତନ୍ତ୍ର ଶାସନରେ ଲୋକସାଧାରଣଙ୍କଠାରୁ ଅଲଗା ହୋଇ ରହି ପାରିବେ ନାହିଁ । ଇଂରେଜୀ ଭାଷା ରହିବା ପାଇଁ ଯେଉଁମାନେ ଚେଷ୍ଟିତ, ସେମାନେ ଆଶା କରି ବସିଛନ୍ତି ଯେ, ଏହି ଭାଷା ଜରିଆରେ ସେମାନଙ୍କ ବୈଶିଷ୍ଟ୍ୟ ଚିରକାଳ ରହିଯିବ । ଏ ଆଶା ବୃଥା । ଏହା କଲ ସମ୍ଭବ ନାହିଁ, ଲୋକେ ବି ସହିବେ ନାହିଁ; କାରଣ ବୈଦେଶିକ ଭାଷା ଧରି ଧରି ବୈଦେଶିକ ଢଙ୍ଗ ଓ ମନରେ ବୈଦେଶିକ ଭାବ ବଢ଼େ ବଢ଼େ ପଶିଯିବ । ପୂର୍ବରୁ ଯେପରି କୁହାଯାଇଛି, କୌଣସି ଭାବ ଖାଲି ବୈଦେଶିକ ବୋଲି ଘୃଣ୍ୟ ନୁହେଁ; କିନ୍ତୁ ତାହା ଯଦି ଦେଶର ଜଳବାୟୁର ଅନୁକୂଳ ନ ହେଲା ଓ ସମସ୍ତେ ତାହା ଗ୍ରହଣ କରିବାକୁ ସମର୍ଥ ନ ହେଲେ, ତେବେ ନିଜ କାର୍ଯ୍ୟ ନିଜ ଭାଷାରେ କରିବାକୁ ହେବ ।

ଇଂରେଜୀ ଭାଷା ସପକ୍ଷରେ ନାନାପ୍ରକାର ଯୁକ୍ତି ବଢ଼ା ହେଉଛି । କେହି କହୁଛି, ଇଂରେଜୀ ସାହିତ୍ୟରେ ଯେଉଁ ରତ୍ନ ସବୁ ଅଛି, ଭାଷା ଉଠିଗଲେ ତାହା ଛପି ଯିବ । କେହି କହୁଛି, ବିଜ୍ଞାନର ପାରିଭାଷିକ ଶବ୍ଦ ଆମକୁ ମିଳିବ ନାହିଁ । ଟିକେ ବିଶ୍ଳେଷଣ କଲେ ଜଣାଯିବ, ଏହା ନିତାନ୍ତ ପିଲାଳିଆ ବା ନ୍ୟସ୍ତ-ସ୍ୱାର୍ଥଙ୍କର ଯୁକ୍ତି । ଇଂରେଜୀ ସାହିତ୍ୟର ରତ୍ନ ସେ ଭାଷା କୋର୍ଟକଚେରୀରେ ବା ବଜାରରେ ବ୍ୟବହୃତ ହେଲେ ଆମକୁ ମିଳିଯିବ ନାହିଁ । ଯେଉଁ ସବୁ ପରଭାଷା ଆମ ଭାଷାରେ ନ ହୋଇ ପାରୁଛି, ସେ ଶବ୍ଦସବୁର ମୂଳ ଅର୍ଥ ହୃଦୟଙ୍ଗମ ହେଉଛି କି ନାହିଁ ସନ୍ଦେହ । ସୃଷ୍ଟି ଖାଲି କୋଉ ଭାଷା ନାହିଁ । ଦରକାର ହେଲେ ଯେ କୌଣସି ବିଦେଶୀ ଭାଷାର ଶବ୍ଦ ଅନୁକରଣ କରିବାରେ ବାଧା ନାହିଁ । ଇଂରେଜୀ ଭାଷା ପ୍ରତିଦିନ ଏହିପରି ଆହରଣ କରୁଛି । ଆମେ ବି କରିଁ । ସଂସ୍କୃତ ଓ ପ୍ରାଚୀନ ପ୍ରାକୃତ ଭାଷା ଯାବନିକ ବା ଏହିପରି ବୈଦେଶିକ ଶବ୍ଦ ଆହରଣ କରି ନିଜର କରି ନେଇଛନ୍ତି । ତାହାର ଉଦାହରଣ ସମସ୍ତଙ୍କୁ ଜଣା ।

କେହି ଟାଣ କରି ଗୋଟିଏ ଯୁକ୍ତି କରୁଥାଏ ଯେ, ଆଜିକାଲିର ବୈଜ୍ଞାନିକ ଆବିଷ୍କାର ଫଳରେ ଦେଶ ଦେଶ ଭିତରର ଦୂରତ୍ୱ କମି ଯାଉଛି, ପୃଥିବୀ ଗୋଟିଏ ପରିବାର ହେବାକୁ ଯାଉଛି । ଏକ ପରିବାରରେ ଏକ ଭାଷା ଚଳିବା ଉଚିତ । ଏ ପର୍ଯ୍ୟନ୍ତ କାହାର ଆପତ୍ତି ନାହିଁ । ସେ ଭାଷାଟି ଯେତେବେଳେ ଇଂରେଜୀ ବୋଲି ନିର୍ଦ୍ଦିଷ୍ଟ ହୋଇ ଯାଉଛି, ସେହିଠାରେ ଅଡ଼ୁଆ ପଶୁଛି । ଏସିଆର ଚୀନ ଓ

ଭାରତରେ ପୃଥିବୀର ଅର୍ଦ୍ଧାଧିକ ଲୋକ ବାସ କରୁଛନ୍ତି । ଏ ଦେଶର ଲୋକଙ୍କୁ କେତେବର୍ଷ ଭିତରେ ଇଂରେଜୀ ଶିଖେଇ ଦେଇ ହେବ, ସେ ଆଲୋଚନାର ପୁନରାବୃତ୍ତି ସୃଷ୍ଟି ଦରକାର ହେଉଛି । ମୁଷ୍ଟିମେୟ ଲୋକେ ଇଂରେଜୀ ଭାଷା ସାହାଯ୍ୟରେ ବିଦେଶୀ ଲୋକଙ୍କ ସହିତ କଥାବାର୍ତ୍ତା ହେବେ ବୋଲି ସେହି ବିଦେଶୀ ଭାଷାଟି ଲୋକଙ୍କ ଉପରେ ଲଦିଦେବା ନିଶ୍ଚିତ ସ୍ୱୈରଶାସନ ହେବ । ତେଣୁ ଏ ବିଷୟରେ ନିଜ ମନକୁ ପରିଷ୍କାର କରି ଦେବାକୁ ହେବ । ତାହା ଅଳ୍ପଦିନ ଭିତରେ ହୋଇଯିବ ବୋଲି ବିଶ୍ୱାସ କରାଯାଏ । ଦୁଃଖ ଚୀନ ପ୍ରଧାନ ମନ୍ତ୍ରୀ ଚାଉ ଏନ୍ ଲାଇ ଜେନେଭା ଓ ଦିଲ୍ଲୀରେ ପୃଥିବୀର କୂଟମଣ୍ଡଳୀ ଓ ଶ୍ରୀ ଜବାହରଲାଲ ନେହେରୁଙ୍କ ସଙ୍ଗେ ଯେଉଁ ଭାଷାରେ କଥାବାର୍ତ୍ତା ଚଳାଇଲେ ଆମ୍ଭମାନଙ୍କୁ ସେଥିରେ ସନ୍ତୁଷ୍ଟ ହେବାକୁ ପଡ଼ିବ । ବିଶ୍ୱବିଦ୍ୟାଳୟରୁ ବାହାରି ଥିବା ଲୋକେ ଦୋଭାଷୀ ବା ବହୁଭାଷୀ ହୋଇ ଦେଶନାୟକମାନଙ୍କୁ ସାହାଯ୍ୟ କରିବାରେ କଷ୍ଟ ହେବ ନାହିଁ; କିନ୍ତୁ ସବୁ ଦେଶନାୟକ ବିଶ୍ୱ-ବିଦ୍ୟାଳୟରୁ ଉତ୍ତୀର୍ଣ୍ଣ ହୋଇଥିବେ ବୋଲି କଳ୍ପନା କଲେ ଗଣତନ୍ତ୍ରର ତେଜ ମରିଯିବ ।

## ଶିକ୍ଷାର ଢଙ୍ଗ ବଦଳିବ

ଇଂରେଜ ଶାସନ ଓ ଇଂରେଜୀ ଭାଷା ବିଷୟରେ ମତ ସ୍ଥିର ହେବା ସଙ୍ଗେ ସଙ୍ଗେ ଏ ଶିକ୍ଷାର ଢଙ୍ଗ ବଦଳି ଯିବ । ବର୍ତ୍ତମାନ ଯେଉଁ ଶିକ୍ଷା ପ୍ରଣାଳୀ ଚାଲିଛି, ତାହାର ଦୋଷ ବିଷୟରେ ସମସ୍ତେ ଏକ ମତ । ଏଥିରେ ଗୁଣ ଯେ ନାହିଁ, ତାହା ନୁହେଁ; କିନ୍ତୁ ସବୁ ଗୁଣ ବିଦେଶୀ ଢଙ୍ଗ ଓ ବିଦେଶୀ ଭାଷା ଯୋଗୁଁ ଚାପି ଯାଉଛି । ଭାଷା ପ୍ରତି ଅନୁରକ୍ତିର ଆତିଶଯ୍ୟ ଯୋଗୁଁ ପାଠ ସ୍କୁଲକୋଠରୀ ଭିତରେ ଆବଦ୍ଧ ହୋଇ ଯାଉଛି । ଲୋକସାଧାରଣ ଏହାଦ୍ୱାରା ଉପକୃତ ହୋଇ ପାରୁ ନାହାନ୍ତି । ସ୍କୁଲଘରେ ଲୁହାଡଣା ଲେଖାଉଥିବା ଛାତ୍ରମାନେ ଲୋକସାଧାରଣଙ୍କ ସଙ୍ଗେ ସମ୍ପର୍କ ରଖିବାକୁ ସମର୍ଥ ହେଉ ନାହାନ୍ତି । ଶିକ୍ଷିତ ଅଶିକ୍ଷିତଙ୍କ ଭିତରେ ଜାତି ଭେଦ ଉତ୍କଟ ହୋଇ ଉଠୁଛି । ସେହି ଜାତି ଭେଦର ସଦ୍ୟ-ମୁଖ ଶିକ୍ଷିତ ଲୋକଙ୍କୁ ଏପରି ବିଚାର କରାଉଛି ଯେ, ମହାତ୍ମା ଗାନ୍ଧି ଓ ଡକ୍ଟର ରାଧାକୃଷ୍ଣନ୍‌ଙ୍କ ପରି ମନୀଷୀ-ମାନେ ଶିକ୍ଷାରେ ଯେଉଁ ପରିବର୍ତ୍ତନ ଲୋଡ଼ୁଛନ୍ତି, ତାହା ଚେର ଧରୁ ନାହିଁ । ଆମେମାନେ ଯେଉଁ ସମାଜର କଥା କଳ୍ପନା କରୁଛୁ, ସେତେବେଳକୁ ଦେଶର ଶିକ୍ଷା ଗଣ ମୁଖୀ ଓ ଲୋକୋପଯୋଗୀ ହୋଇପାରିଥିବ । ଶିକ୍ଷା ଉପାର୍ଜନରେ ଆବଦ୍ଧ ନ ହୋଇ ବିଷୟ ଜ୍ଞାନକୁ ବିସ୍ତାର ଲାଭ କରିବ । ମଝି ସମୟରେ, ୩୦ ବର୍ଷ ପରର ସମୟର ତୁଳନାରେ ଶିକ୍ଷାର ମାନ ଖସି ଯିବାର ଆଶଙ୍କା ଅଛି । ସେପରି ହେବା କିନ୍ତୁ ସ୍ୱାଭାବିକ । ବାଧ ନ ପାରିଲେ ଫାଟିବ ନାହିଁ ।

## ସ୍ୱାସ୍ଥ୍ୟ-ନୀତିର ପରିବର୍ତ୍ତନ

ତା ପରକୁ ବା ତାହିଁ ସଙ୍ଗେ ସଙ୍ଗେ ରାଜ୍ୟର ସ୍ୱାସ୍ଥ୍ୟ-ନୀତିରେ ମଧ୍ୟ ବୈପ୍ଳବିକ ପରିବର୍ତ୍ତନ ହେବ । ଇଂରେଜ ଅମଳରେ ସ୍ୱାସ୍ଥ୍ୟ ବିଭାଗ କେତେକ ଇଂରେଜ ବା ଦେଶୀ ରାଜକର୍ମଚାରୀଙ୍କ ସୁବିଧା ସକାଶେ ଖୋଲିଥିଲା । ଡାକ୍ତର ମଧ୍ୟ ସେଇଥିପାଇଁ ନିଯୁକ୍ତ ହୋଇଥିଲେ । ତାହାର ଚିହ୍ନ ଅଦ୍ୟାପି ରହିଛି । ଡାକ୍ତରଖାନାରେ ବଡ଼ ବଡ଼ କର୍ମଚାରୀମାନେ ମଧ୍ୟ ବିନା ପଇସାରେ ଜାଗା ଆଦର ଓ ଚିକିତ୍ସା ପାଉଛନ୍ତି । କର୍ମଚାରୀ ଓ ସେମାନଙ୍କ ପିଲାବାଲାଙ୍କୁ ଚିକିତ୍ସା କରିବାକୁ ଘରକୁ ଗଲେ ଡାକ୍ତର ଫିସ୍ ପାଇବାକୁ ହକ୍‌ଦାର ନୁହନ୍ତି । ଡାକ୍ତରଖାନା-ଗୁଡ଼ିକରେ ଯେତେ ପଇସାର ଔଷଧ ଦିଆଯାଏ, ଯେତେ କର୍ମଚାରୀ ଅଛନ୍ତି, ତାହା ଲୋକଙ୍କର ପ୍ରୟୋଜନକୁ ତୁଳି କେତେ, ସମସ୍ତେ ଜାଣନ୍ତି । ଜନସାଧାରଣ ଡାକ୍ତରୀ ଔଷଧ ଖାଇବାକୁ ପସନ୍ଦ କରୁ ନାହାନ୍ତି ବୋଲି ଡାକ୍ତରଖାନାଗୁଡ଼ିକ ଶସ୍ତି

ଅତୀତର ମୂଲ୍ୟବୋଧ ଉପରେ ଠିଆ ହେବ । ଯେପରି ନ କଲେ ସବଜନରେ ସ୍ୱାର୍ଥାଦ ଭୋଗବାଦ ସୃଷ୍ଟି ହେବ । ଏ ଦିଗରେ ଶ୍ରୀ ବିନୋବାଙ୍କ ନେତୃତ୍ୱରେ ଗୋଟିଏ ସକ୍ରିୟ ଆନ୍ଦୋଳନ ଆରମ୍ଭ ହେଲାଣି । ଆଶା କରାଯାଉଛି, ଅତି ଅଳ୍ପ ଦିନ ଭିତରେ ତାଙ୍କର ପ୍ରେରଣାରେ ଆମେ ସମସ୍ତେ ନିଜର ଚିନ୍ତାଧାରାକୁ ମାର୍ଜିତ କରିବାକୁ ସମର୍ଥ ହେବା । ଏହି ସଂଖ୍ୟାରେ ଅନ୍ୟତ୍ର ବିନୋବାଦର୍ଶନର କିଞ୍ଚିତ ରୂପରେଖ ଦିଆଯାଇଛି । ତାଙ୍କ କର୍ମର ଭୂଦାନ ଗୋଟିଏ ଅଂଶ ମାତ୍ର । ସମାଜର ସମସ୍ତ ବିଭାଗରେ କ୍ରମେ କ୍ରମେ ବୈପ୍ଳବିକ ପରିବର୍ତ୍ତନ କରିବା ଲକ୍ଷ୍ୟରେ ସେ କାର୍ଯ୍ୟ ଆରମ୍ଭ କରିଛନ୍ତି । ସେହି ଚେଷ୍ଟାର ଫଳରେ କ୍ରମେ ପୁରୁଣାର ଉପାର୍ଜିତ ଆବର୍ଜନା ଭିତରୁ ବସ୍ତୁତ ରତ୍ନ ଆବିଷ୍କୃତ ହେବ ଓ ତାକୁହିଁ ମୂଳଧନ କରି ଭାରତୀୟ ସଭ୍ୟତା ଅଭିନବ ରୂପରେ ଆତ୍ମପ୍ରକାଶ କରିବ ।

ଇଂରେଜ ପଣ୍ଡିତଙ୍କର ଗବେଷଣା ଫଳରେ ଭାରତୀୟ ସଭ୍ୟତା ବୋଇଲେ ଆମ୍ଭେମାନେ ବୁଝୁଁ ଆଧ୍ୟାତ୍ମବାଦ, ପାର୍ଥିବ ବିଷୟ ପ୍ରତି ଅନାସକ୍ତି, ଉଦ୍ୟମହୀନତା, ନିଜର ଅଭାବକୁ କମାଇ କମାଇ ଶୂନ ପର୍ଯ୍ୟନ୍ତ ନେବା, ଶେଷରେ ସାଯୁଜ୍ୟ ପାଇବା ନିମନ୍ତେ ଅନଶନରେ ବା ଅଗ୍ନିକୁଣ୍ଡରେ ଆତ୍ମହତ୍ୟା କରିବା । ଇଂରେଜ ପ୍ରଚାରକଙ୍କର ବାହାଦୁରୀ ଯେ, ସେ ତାଙ୍କର ପ୍ରଚାର ଧୂଆଁ ବାଣରେ ଆମ ଆଖିକୁ ଏପରି ଝାପସା କରି ଦେଲେ ଯେ, ସେଥିରେ ମହେଞ୍ଜୋଦାରୋ ପଡ଼ିଲା ନାହିଁ; ନାଳନ୍ଦା ଦିଶିଲା ନାହିଁ; ସାଞ୍ଚି ଅଜନ୍ତା ଏଲୋରା, କୋଣାର୍କ ଅଦୃଶ୍ୟ ହୋଇଗଲେ । ଆମର କାବ୍ୟ କବିତା, ଧର୍ମଶାସ୍ତ୍ର, ରାଜନୀତି ଶାସ୍ତ୍ର, ଜ୍ୟୋତିଷଶାସ୍ତ୍ର, ଶିଳ୍ପଶାସ୍ତ୍ର, ଅର୍ଥନୀତି ଓ ସମାଜନୀତି ପ୍ରଭୃତି ଭୁଲି ଯାଇଗଲେ । ଯେଉଁମାନେ ବୈଷୟିକ ସୁଖରେ ଜୀବନସମ୍ଭୋଗକୁ ମୂଳ କରି ଧରି ତାହାରି ଉପରେ ସଭ୍ୟତା ଗଢ଼ିଛନ୍ତି, ସେମାନେ ଏହାଠାରୁ ବଳି ଆଉ କଳ୍ପନା କରିଥିଲେ, କେହି ଅସ୍ୱୀକାର କଲେ ନାହିଁ । ବିଜ୍ଞାନର ଉତ୍କର୍ଷରେ ଆମେ ପଛରେ ପଡ଼ି ଯାଇଥାଉଁ, ଏ କଥା ସତ । ଗତ ଶହେ ଦେଢ଼ଶହେ ବର୍ଷ ଭିତରେ ପୃଥିବୀର ବିଜ୍ଞାନ ଉନ୍ନତି ଲାଭ କରିଛି । ଆମର ସ୍ୱାଧୀନ ଚିନ୍ତାସ୍ରୋତ ଆଜକୁ ଦୁଇ ଶହ ବର୍ଷ ହେଲା ଶୁଖି ଯାଇଛି, ଯେଉଁମାନେ ଉନ୍ନତି କରିଛନ୍ତି ସେହିମାନଙ୍କ ଛାଡ଼ିଦେଲେ । ତେଣୁ ଭାରତୀୟ ସଂସ୍କୃତିର ତୁଳନା କରିବାକୁ ହେଲେ ପାଶ୍ଚାତ୍ୟ ଦେଶମାନଙ୍କର ଅଷ୍ଟାଦଶ ଶତାବ୍ଦୀର ମଧ୍ୟ ଭାଗରେ ଯେଉଁ ଉନ୍ନତି ହୋଇଥିଲା ତାହାରି ସଙ୍ଗେ ତୁଳନା କରିବାକୁ ହେବ । ସେ ତୁଳନାରେ ଭାରତ ନିକୃଷ୍ଟ ଥିଲା ନାହିଁ ନିଶ୍ଚୟ । ଅତୀତରେ ଏହା ଅନୁଭବ କରିବା ଅସମର୍ଥ ହୋଇ ସେହିମାନେ ମନେ କରୁଛନ୍ତି ସେ ଭାରତର ଗତ ୨ ଶହ ବର୍ଷ ଇତିହାସରୁ କିଛି ଶିଖି ନାହାନ୍ତି । ନିଜର ଜାତି ଦଖଲ ଗତ ଦୁଇ ଶହ ବର୍ଷ ହେଲା ଅନ୍ୟ ହାତରେ ଯୋଡ଼ାଇବା ଫଳରେ ଆମର ଗୌଣତା ମନୋବୃତ୍ତି ବଢ଼ି ଯାଉଛି । ଏହି ସେହିମାନଙ୍କ ଜନ୍ମରେ ଆମେ ଯେ ଭାଙ୍ଗିଥାଉଁ ସେତେବେଳେ ସେମାନଙ୍କର ମହତ୍ତ୍ୱ ଦେଖି ଆମର ସମ୍ମାନ ହୋଇ ନ ଥିଲା, ସେମାନଙ୍କ ବର୍ବରତାରେ ଆମ ଲୋକ ଚାକର ହୋଇଯାଇଥିଲେ । ସେମାନଙ୍କ ବର୍ବରତା ଓ କୁଶିକ୍ଷା ଫଳରେ ଆମ ଦେଶର ମୁଷ୍ଟିମେୟ ସେମାନଙ୍କୁ ପୂଜା କରିବାକୁ ଆରମ୍ଭ କଲେ, ଅନ୍ୟ ସମସ୍ତେ କଇଁଛ ଖୋଳ ଭିତରେ ପଶିଲା ପରି ପଶି ଅଦ୍ୟାପି ନିଜ ସ୍ୱତ୍ୱରେ ରହିଛନ୍ତି । ତାହାର ପ୍ରମାଣ ଆଜି ମଧ୍ୟ ଓଡ଼ିଶାରେ ବର୍ଷକୁ ୭୦ ହଜାର ଖଣ୍ଡ ଏଭାବଶତ ବର୍ଣ୍ଣି ହେଉଛି ।

ରକ୍ଷଣଶୀଳତା ଭାରତୀୟ ସଂସ୍କୃତିରେ ନାହିଁ । ଦେଶ, କାଳ ଓ ପାତ୍ରକୁ ଦୃଷ୍ଟି ଦେଇ ବଦଳି ବଦଳି ଯାଉଛି, ସ୍ୱରୂପଗତ ବଦଳି ହୋଇ ଯାଉଛି । ଏ ଦେଶର ଧର୍ମ ପୁଣି ଖାଲି ଆଧ୍ୟାତ୍ମିକତାରେ ଆବଦ୍ଧ ନୁହେଁ ।

ଅଗ୍ରଗତିର ମୂଳଦୁଆ ଉପରେ ଠିଆ ହେବ । ସେପରି ନ କଲେ ସବୁଦିନରେ ଶ୍ୱାସାବ ରୋଧରେ ଶବ ହେବ । ଏ ଦିଗରେ ଶ୍ରୀ ବିନୋବାଙ୍କ ନେତୃତ୍ୱରେ ଗୋଟିଏ ସକ୍ରିୟ ଆନ୍ଦୋଳନ ଆରମ୍ଭ ହେଲାଣି । ଆଶା କରାଯାଉଛି, ଅତି ଅଳ୍ପ ଦିନ ଭିତରେ ତାଙ୍କର ପ୍ରେରଣାରେ ଆମେ ସମସ୍ତେ ନିଜର ଚିନ୍ତାଧାରାକୁ ମାର୍ଜିତ କରିବାକୁ ସମର୍ଥ ହେବା । ଏହି ସଂଖ୍ୟାରେ ଅନ୍ୟତ୍ର ବିନୋବାଦର୍ଶନର କଣ୍ଠିତ ରୂପରେଖ ଦିଆହୋଇଛି । ତାଙ୍କ କର୍ମର ଭୂଦାନ ଗୋଟିଏ ଅଂଶ ମାତ୍ର । ସମାଜର ସମସ୍ତ ବିଭାଗରେ କ୍ରମେ କ୍ରମେ ବୈପ୍ଳବିକ ପରିବର୍ତ୍ତନ କରିବା ଲକ୍ଷ୍ୟରେ ସେ କାର୍ଯ୍ୟ ଆରମ୍ଭ କରିଛନ୍ତି । ସେହି ଚେଷ୍ଟାର ଫଳରେ କ୍ରମେ ଶତାବ୍ଦୀର ଜମାଥିବା ଆବର୍ଜନା ଭିତରୁ ବହୁତ ରତ୍ନ ଆବିଷ୍କୃତ ହେବ ଓ ତାକୁହିଁ ମୂଳଧନ କରି ଭାରତୀୟ ସଭ୍ୟତା ଅଭିନବ ରୂପରେ ଆତ୍ମପ୍ରକାଶ କରିବ ।

ଇଂରେଜ ପଣ୍ଡିତଙ୍କର ଗବେଷଣା ଫଳରେ ଭାରତୀୟ ସଭ୍ୟତା ବୋଇଲେ ଆମ୍ଭେମାନେ ବୁଝୁଁ ଆଧ୍ୟାତ୍ମବାଦ, ପାର୍ଥିବ ବିଷୟ ପ୍ରତି ଅନାସକ୍ତି, ଉଦ୍ୟମହୀନତା, ନିଜର ଅସ୍ତିତ୍ୱକୁ କମାଇ କମାଇ ଶୂନ ପର୍ଯ୍ୟନ୍ତ ନେବା, ଶେଷରେ ସାଯୁଜ୍ୟ ପାଇବା ନିମନ୍ତେ ଅନଶନରେ ବା ଅଗ୍ନିକୁଣ୍ଡରେ ଆତ୍ମହତ୍ୟା କରିବା । ଇଂରେଜ ପ୍ରଚାରକଙ୍କର ବାହାଦୁରୀ ଯେ, ସେ ତାଙ୍କର ପ୍ରଚାର ଧୂଆଁ ବାଣରେ ଆମ ଆଖିକୁ ଏପରି ଝାପସା କରି ଦେଲେ ଯେ, ସେଥିରେ ମହେଞ୍ଜୋଦାରୋ ପଶିଲା ନାହିଁ; ନାଳନ୍ଦା ଦିଶିଲା ନାହିଁ; ସାଞ୍ଚି ଅଜନ୍ତା ଏଲୋରା, କୋଣାର୍କ ଅଦୃଶ୍ୟ ହୋଇଗଲେ । ଆମର କାବ୍ୟ କବିତା, ଧର୍ମଶାସ୍ତ୍ର, ରାଜନୀତି ଶାସ୍ତ୍ର, ଜ୍ୟୋତିଷଶାସ୍ତ୍ର, ଶିଳ୍ପଶାସ୍ତ୍ର, ଅର୍ଥନୀତି ଓ ସ୍ଥାପତ୍ୟ ପ୍ରଭୃତି ଲୁଚି ରହିଗଲେ । ଯେଉଁମାନେ ବୈଷୟିକ ସୁଖରେ ଜୀବନସମ୍ଭୋଗକୁ ମୂଳ କରି ଧରି ତାହାର ଉପରେ ସଭ୍ୟତା ଗଢ଼ିଛନ୍ତି, ସେମାନେ ଏହାଠାରୁ ବଳି ଆଉ କଳ୍ପନା କରିଥିଲେ, କେହି ଅସ୍ୱୀକାର କଲେ ନାହିଁ । ବିଜ୍ଞାନର ଉତ୍କର୍ଷରେ ଆମେ ପଛରେ ପଡ଼ି ଯାଇଥାଉଁ, ଏ କଥା ସତ । ଗତ ଶହେ ଦେଢ଼ଶହେ ବର୍ଷ ଭିତରେ ପୃଥିବୀର ବିଜ୍ଞାନ ଉନ୍ନତି ଲାଭ କରିଛି । ଆମର ସ୍ୱାଧୀନ ଚିନ୍ତାଶକ୍ତି ଆଜକୁ ଦୁଇ ଶହ ବର୍ଷ ହେଲା ଶୁଖି ଯାଇଛି, ଯେଉଁମାନେ ଉନ୍ନତି କରିଛନ୍ତି ସେହିମାନଙ୍କ ଛାଡ଼ବାରେ । ତେଣୁ ଭାରତୀୟ ସଂସ୍କୃତିର ତୁଳନା କରିବାକୁ ହେଲେ ପାଶ୍ଚାତ୍ୟ ଦେଶମାନଙ୍କର ଅଷ୍ଟାଦଶ ଶତାବ୍ଦୀର ମଧ୍ୟ ଭାଗରେ ଯେତକ ଉନ୍ନତି ହୋଇଥିଲା ତାହାର ସଙ୍ଗେ ତୁଳନା କରିବାକୁ ହେବ । ସେ ତୁଳନାରେ ଭାରତ ନିକୁଛିଆ ଦିଶିବ ନାହିଁ ନିଶ୍ଚୟ । ଅଜ୍ଞାତରେ ସବୁ ଅନୁଭବ କରିବା ଦରକାର ବୋଲି ଯେଉଁମାନେ ମନେ କରୁଛନ୍ତି ସେ ଭାରତର ଗତ ୨ ଶହ ବର୍ଷ ଇତିହାସକୁ କହୁ ଶିଖି ନାହାନ୍ତି । ନିଜର ଜାତି ହରାଇ ଗତ ଦୁଇ ଶହ ବର୍ଷ ହେଲା ଅନ୍ୟ ପଛରେ ଗୋଡ଼ାଇବା ଫଳରେ ଆମର ଗୌଣରୁ ମନୋବୃତ୍ତି ବଢ଼ି ଯାଇଛି । ଏହି ଯେଉଁମାନଙ୍କ ପଛରେ ଆମେ ଗୋଡ଼ାଉଥାଉଁ ସେତେବେଳେ ସେମାନଙ୍କର ମହତ୍ତ୍ୱ ଦେଖି ଆମର ସମ୍ମାନ ହୋଇ ନ ଥିଲା, ସେମାନଙ୍କ ବର୍ବରତାରେ ଆମ ଲୋକେ ତାଟକା ହୋଇଯାଇଥିଲେ । ସେମାନଙ୍କ ବର୍ବରତା ଓ କୁଶିକ୍ଷା ଫଳରେ ଆମ ଦେଶର ମୂର୍ଖମାନେ ସେମାନଙ୍କୁ ପୂଜା କରିବାକୁ ଆରମ୍ଭ କଲେ, ଅନ୍ୟ ସମସ୍ତେ କଇଁଚ ଖୋଳ ଭିତରେ ପଶିଲା ପରି ପଶି ଅଦ୍ୟାପି ନିଜ ଖୋଳରେ ରହିଛନ୍ତି । ତାହାର ପ୍ରମାଣ ଆଜି ମଧ୍ୟ ଓଡ଼ିଶାରେ ବର୍ଷକୁ ୬୦ ହଜାର ଖଣ୍ଡ ଏଭାବଶସ୍ତ ବିକ୍ରି ହେଉଛି ।

ରକ୍ଷଣଶୀଳତା ଭାରତୀୟ ସଂସ୍କୃତିରେ ନାହିଁ । ଦେଶ, କାଳ ଓ ପାତ୍ରକୁ ଦୃଷ୍ଟି ଧର୍ମ ବେଳେ ବଦଳି ଯାଉଛି, ସ୍ୱରୂପତ ବଦଳି ଦେଇ ଯାଉଛି । ଏ ଦେଶର ଧର୍ମ ପୁଣି ଖାଲି ଆଧ୍ୟାତ୍ମିକତାରେ ଆବଦ୍ଧ ନୁହେଁ ।

ଜୀବନ୍ତ ସ୍ତ୍ରୀ ସମ୍ଭୋଗ କରିବାକୁ ହେଉ ତାହା ବି ଧର୍ମ, ମାତ୍ର ଜଣଙ୍କର ସେଥିରେ ମଙ୍ଗଳ ହେବ, ତାହା ହିନ୍ଦୁର ଓ ସେହି ଆଧୁନିକ ଧର୍ମର ପ୍ରବୃତ୍ତି । ଖଜୁରାହୋ, ଲିଙ୍ଗରାଜ ମୂର୍ତ୍ତି, ଦେଉଳ ମୂର୍ତ୍ତି ଓ ଗଦାଧର ଶେଷ ଏହି ଯୁଗ ଶକ୍ତି ଏହି କ୍ରମରେ ବର୍ଣ୍ଣିତ ସମସ୍ତରେ ଲକ୍ଷିତ । ଏହାର ତୁଳନା କଲେ ଜଣା ପଡ଼ିବ, ଆମ ଧର୍ମ କେତେ ପରିବର୍ତ୍ତନ ସହିପାରେ ବିଷୟଭୋଗକୁ ପରମାର୍ଥ ହେଲେ ଆଜିର ପାଶ୍ଚାତ୍ୟ ଯୋଗୀଙ୍କ ପରି ଏ ଦେଶର ଯୋଗୀ ସ୍ୱୀକାର କରି ନାହାନ୍ତି, କିନ୍ତୁ ଲୋକହିତ ନିମନ୍ତେ ବୈଷୟିକ ସମୃଦ୍ଧି କରିବାରେ କେବେ ବାଧା ଦିଆ ହୋଇ ନାହିଁ—ବରଂ ଉତ୍ସାହ ଦିଆ ହୋଇଛି । ତାହା ନ ହୋଇଥିଲେ ହୁଏନ୍‌ସାଂ ଏଠାରେ ବିଶ୍ୱବିଦ୍ୟାଳୟ ଦେଖି ନ ଥାନ୍ତେ, କୋଣାର୍କ ନ ଥାନ୍ତା, କାଳିଦାସଙ୍କ ଶକୁନ୍ତଳା ବି ଲେଖା ହୋଇ ନ ଥାନ୍ତା । ତେଣୁ ଆମେ ପୁରୁଣା ସଂସ୍କୃତିକୁ ଧରିଲେ ରେଳ ଉଡ଼ାଜାହାଜ ଉଠିବ ନାହିଁ, କଳକାରଖାନା ରହିବ ନାହିଁ ଏ ବିଷୟରେ ପ୍ରଶ୍ନ କରିବା ଅବାନ୍ତର ହେବ । ଆମ ସମାଜରେ ଏ ସବୁ ହେବେ ମିଲ ହେବେ; କିନ୍ତୁ ଏହାର ମିଲ ମାଲିକ ରହିବେ ନାହିଁ । ଲୋକେ ଭୋଗ କରିବେ, ଲୋକେ ନିଜ ଇଚ୍ଛାରେ ବିଷୟ ଭୋଗରୁ ନିବୃତ୍ତ ହେବା ପର୍ଯ୍ୟନ୍ତ ବିଷୟ ଭୋଗ କରିବାକୁ ପୂର୍ଣ୍ଣ ସ୍ୱାତନ୍ତ୍ର୍ୟ ପାଇବେ । ସେ ପରମଜ୍ଞାନ ଲାଭ କରିବେ, ସେହିମାନେ କେବଳ ବିଷୟଭୋଗର ବାସନା ଛାଡ଼ିବେ ଓ ନିଜେ ତପସ୍ୟାର କ୍ଲେଶ ସହି ଉପାସନା କରିବେ :—

ସର୍ବେ ଭବନ୍ତୁ ସୁଖିନଃ ସର୍ବେ ସନ୍ତୁ ନିରାମୟାଃ
ସର୍ବେ ଭଦ୍ରାଣି ପଶ୍ୟନ୍ତୁ ନ କଶ୍ଚିତ୍ ଦୁଃଖଭାକ୍ ଭବେତ୍

ସ୍ତୁତି କରିବେ—

କାଲେ ବର୍ଷନ୍ତୁ ପର୍ଜନ୍ୟଃ ପୃଥିବୀ ଶସ୍ୟଶାଳିନୀ
ଦେଶୋଽୟଂ କ୍ଷୋଭରହିତୋ ବ୍ରାହ୍ମଣାଃ ସନ୍ତୁ ନିର୍ଭୟାଃ ।

## ଭବିଷ୍ୟତର ମାରଫତଦାର

ଏହି ଭଳି ଶ୍ଳୋକମାନଙ୍କର ମୂଳ ଅର୍ଥକୁ ଛାଡ଼ି, ଆଧୁନିକ ପଣ୍ଡିତମାନେ ବ୍ରାହ୍ମଣ ଶବ୍ଦର କଦର୍ଥ କରନ୍ତି ; ବୁଝାଇବାକୁ ଚେଷ୍ଟା କରନ୍ତି, ଯେ ପଇତା ପିନ୍ଧନ୍ତି, ସେହି ବ୍ରାହ୍ମଣ । ଆମ ଶାସ୍ତ୍ରରେ ସେମାନଙ୍କୁ 'ବ୍ରହ୍ମବନ୍ଧୁ' ବୋଲି କୁହାଯାଏ । ତାହାର ଅର୍ଥ, ଯେଉଁମାନେ ନିଜର ପଇତା ଖଣ୍ଡିକର ବଳରେ ବ୍ୟକ୍ତିଗତ ସୁବିଧା ହାସଲ କରିବାକୁ ଚେଷ୍ଟା କରନ୍ତି । ସେମାନେ ନମସ୍କରଣୀୟ ବି ନୁହନ୍ତି । ବ୍ରାହ୍ମଣର ଅର୍ଥ, ଯେ ନିଜର ସାଧନା ବଳରେ ଧର୍ମର ମୂଳତତ୍ତ୍ୱ ଜାଣିଛି । ସେ କେଉଁ ଜାତିରେ ଜନ୍ମ, ସେଥିରେ କିଛି ଯାଏ ଆସେ ନାହିଁ—ଯେପରି ମହାତ୍ମା ଗାନ୍ଧୀ ଜଣେ ବ୍ରାହ୍ମଣ । ବ୍ରାହ୍ମଣ ଶବ୍ଦର ଅର୍ଥ ପଣ୍ଡିତ, କବି, ଦ୍ରଷ୍ଟା । ସେହିମାନେ ହେଉଛନ୍ତି ଭାରତ ସଂସ୍କୃତିର ନିୟାମକ ; ସେମାନଙ୍କ ଆସନ ରାଜାଙ୍କ ଉପରେ । ରାଜାଙ୍କର ନିଗ୍ରହାନୁଗ୍ରହ ସେମାନଙ୍କର କ୍ଷତି ବୃଦ୍ଧି କରିପାରେ ନାହିଁ, କାରଣ ନା ପରମ ଜ୍ଞାନର ଅଧିକାରୀ ହୋଇଥିବା ହେତୁ ସେମାନଙ୍କ ମନ ବିଷୟ ତୃଷ୍ଣାର ଅତୀତ ।

ଏଠାରେ ଭାରତର ଯେଉଁ ଭବିଷ୍ୟତ କଳ୍ପନା କରାଯାଇଛି ତାହାର ମାରଫତଦାର ହେବେ ଏମାନେ—ପ୍ରଧାନ ମନ୍ତ୍ରୀର ଆସନରେ ବସି ନୁହେଁ, ନିଜର ପର୍ଣ୍ଣକୁଟୀରରେ ବସି; ବର୍ତ୍ତମାନ ଯେପରି କଳାବଜାରୀ ଭାରତର ନିୟାମକ ହୋଇ ରହିଛନ୍ତି ଓ ସେ ଦିନ ପର୍ଯ୍ୟନ୍ତ ମହାତ୍ମାଜୀ ଥିଲେ ।

ଭାରତର ଭାଗ୍ୟ ଡୋରି ଏମାନଙ୍କ ହାତରେ ରହିଲେ ଭୂମିଦାନ ବା ଭୂମିବଣ୍ଟନ ଆନ୍ଦୋଳନ ସେତେ ବଡ଼ କଥା ପରି ଦିଶୁଛି ସେପରି ରହିବ ନାହିଁ । କାହା ପାଖରେ କେତେ ସମ୍ପତ୍ତି ଅଛି ତାହାକୁ କେହି ବଡ଼ ବୋଲି ଗଣିବେ ନାହିଁ । ଏଜମାନ ମାପ କାଠି ହେବ କେତେ ଧନ ତ୍ୟାଗ କଲେ ଅନ୍ୟର କ

# ପ୍ରାଚୀନ ଶିଳ୍ପସମ୍ପଦ



ରାଜାରାଣୀ ମନ୍ଦିର, ଭୁବନେଶ୍ୱରର ସୂକ୍ଷ୍ମ ଭାସ୍କର୍ଯ୍ୟ



ମୁକ୍ତେଶ୍ୱର ମନ୍ଦିର, ଭୁବନେଶ୍ୱରର ଅନନ୍ୟସୁନ୍ଦର କଳା

ଉପକାର କରନ୍ତି । ସେହି ଉପକାର ତୁଳନାରେ ସ୍ୱୋପାର୍ଜିତ ଧନର ମାରଫତଦାର ହେବାର ଅଧିକାର ରହିବ । ସମସ୍ତ ମଙ୍ଗଳର ନିର୍ଦ୍ଦେଶ ଦେବାର ଅନୁକ୍ରମେ ଋଷି ବ୍ରହ୍ମର୍ଷି ହୋଇପାରିବେ—ଯେପରି ବଶିଷ୍ଠ, ଧନରେ ଧର୍ମ କରିବା ଅନୁକ୍ରମେ ରାଜା ରାଜର୍ଷି ହେବେ—ଯେପରି ଜନକ; ଉଚିତ କାର୍ଯ୍ୟରେ ଲଗାଇବା ସକାଶେ ଧନ ସଞ୍ଚିବା ଅନୁକ୍ରମେ ଧନୀ ହୋଇପାରିବେ—ଯେପରି କୁବେର ଧନୀ ।

ପାଞ୍ଚବର୍ଷ ପୂର୍ବେ ଏହି ପ୍ରବନ୍ଧ ଲେଖିଥିଲେ ମୁଁ ପାଗଳାଖାନାକୁ ଯିବା ସକାଶେ ଉଚିତ ଯୋଗ୍ୟତା ହାସଲ ହୋଇଥାନ୍ତା । ବିନୋବାଜୀ ବର୍ତ୍ତମାନ ଯେଉଁ ବାୟୁମଣ୍ଡଳ ସୃଷ୍ଟି କରୁଛନ୍ତି, ସେଥିରେ ପୂର୍ଣ୍ଣ ବିଶ୍ୱାସ ହେଉଛି ଦଶ ବର୍ଷରେ ନ ହେଲେ ବି ଛୋଟିଏ ବା ପଚାଶ ବର୍ଷ ଭିତରେ ମୋଟାମୋଟି ଭାବରେ ଉଦ୍ଦେଶ୍ୟ ପାଇଁ ଏବେ ଯେଉଁ କଳ୍ପନା ବଖାଣନ୍ତି ତାହା ନିଶ୍ଚୟ କାର୍ଯ୍ୟରେ ପରିଣତ ହେବ । ବିନୋବାଜୀ ଠିକ୍ ସମୟରେ ଆବିର୍ଭୂତ ହୋଇଛନ୍ତି । ପାଶ୍ଚାତ୍ୟ ସଭ୍ୟତାର ଚରମ ପରିଣତି ହୋଇସାରିଛି । ବର୍ତ୍ତମାନ ଆଉ ତାହାର ଯୋଉଁ ଅବସ୍ଥା ବାକି ରହିଲା—ଅପକର୍ଷ ଓ ବିନାଶ । ପାଶ୍ଚାତ୍ୟ ସଭ୍ୟତାର ବିନାଶ ହେଲାକ୍ଷଣି ତାହାର ପରେ ଭାରତୀୟ ସଭ୍ୟତା ପୁଣି ତାହାର ପୂର୍ବ ରୂପେ ଆତ୍ମପ୍ରକାଶ କରିବ ।

# ବିନୋବା ବିଚାର

## ପୁରାଣ ସଂସ୍କୃତିର ନୂତନ ପ୍ରୟୋଗ

ଗତ ତୃତୀୟ ସନର ସଂଖ୍ୟାଟି ଆମେ ଭୂମିଦାନର ବିଶେଷ ସଂଖ୍ୟାରୂପେ ପ୍ରକାଶ କରିଥିଲୁଁ । ଅନେକେ ତାହାକୁ ପସନ୍ଦ କରିଛନ୍ତି; କିନ୍ତୁ ଆମ୍ଭମାନଙ୍କର ଜଣେ ସମ୍ମାନାର୍ହ ବ୍ୟକ୍ତି, ଯାହାଙ୍କର ମତାମତକୁ ଆମେମାନେ ଖୁବ ଗୁରୁତ୍ୱ ଦେଉଁ, ଦୟା କରି କହିଲେ, 'ଉତ୍କଳ ପ୍ରସଙ୍ଗ' କ୍ରମେ ସମ୍ପ୍ରଦାୟ ବିଶେଷର ମତକୁ ଧରି ଚାଲିଲଣି । ଏ ମତ ସର୍ବସାଧାରଣ ସ୍ଥାନରେ ପ୍ରକାଶିତ ହୋଇଥିବାରୁ, ନାନା ଲୋକେ ଆମ ଉପରେ ନାନାପ୍ରକାର ଟିପ୍ପଣୀ କଲେ । ତେଣୁ ଗତ ସଂଖ୍ୟାରେ ଭୂ-ଦାନ ବିଷୟରେ ନାନା ତଥ୍ୟ ପ୍ରକାଶିତ ହୋଇଥିବା ସତ୍ତ୍ୱେ ଆଜ ପୁଣି ସେହି ବିଷୟ ଆଉ ଥରେ ଉଲ୍ଲେଖ କରିବାକୁ ପଡ଼ୁଛି ।

ମହର୍ଷି ବିନୋବାଙ୍କର ଭୂମିଦାନ ଆନ୍ଦୋଳନ କୌଣସି କ୍ଷେତ୍ରବିଶେଷରେ ସେହି ରୂପରେ ପ୍ରକାଶିତ ହୋଇଥିବାରୁ ସେହି ନାମରେ ବର୍ତ୍ତମାନ ବି ଚାଲିଛି । କିନ୍ତୁ ସମସ୍ତେ ଜାଣନ୍ତି, ବିନୋବାଜୀ ଭୂମିଦାନ ନାମରେ ଯେଉଁ ନୂତନ ଚିନ୍ତାଧାରା ଆରମ୍ଭ କରିଛନ୍ତି ତାହା ଏବେ ବି ଆଉ ଭୂମିଦାନରେ ଆବଦ୍ଧ ହୋଇ ନାହିଁ । ଭୂମିଦାନ, ସମ୍ପତ୍ତିଦାନ ସର୍ବସ୍ୱଦାନ, ବୁଦ୍ଧି ଓ ଶ୍ରମର ଦାନ ଓ ଜୀବନ ଦାନ ଏହି ନାମରେ ବଢ଼ି ବଢ଼ି ଆନ୍ଦୋଳନର ପରିସର ସାମାଜିକ ଜୀବନର ସମସ୍ତ ବିଭାଗକୁ ସ୍ପର୍ଶ କଲାଣି । ଏକ କଥାରେ କହିବାକୁ ଗଲେ, ବିନୋବାଜୀଙ୍କର ସମସ୍ତ ଚିନ୍ତାଧାରା ଓ ପ୍ରଚାରର ଲକ୍ଷ୍ୟ ଭାରତୀୟ ସଂସ୍କୃତି ଓ ପରମ୍ପରା

ଧିକ ସ୍ତରର ସମସ୍ୟା ସମାଧାନ କରିବା । ଏହି ସମାଧାନରେ ଆମେ ଯେତିକି ସଫଳ ହେବା, ସେହି ଅନୁକ୍ରମେ ଆମର ଆଦର୍ଶ ପୃଥିବୀ ଗ୍ରହଣ କରିବ ।

ପୃଥିବୀ ବର୍ତ୍ତମାନ ଗୋଟିଏ ସଙ୍କଟସନ୍ଧିରେ ପଡ଼ିଛି । ପାଶ୍ଚାତ୍ୟ ସଭ୍ୟତା ବୋଲି ଯାହାକୁ କୁହାଯାଉଥିଲା, ତାହା ଏବେକୁ ଉତ୍କର୍ଷର ଚରମ ସୀମାରେ ପହଞ୍ଚିଛି । ସେ ଦିନ ଜଣେ ପ୍ରସିଦ୍ଧ ବୈଜ୍ଞାନିକ କହିଥିଲେ, 'ଚନ୍ଦ୍ର ମଣ୍ଡଳକୁ ଯିବା ଆଉ କଳ୍ପନାର କଥା ନୁହେଁ । ଯୋଜନା ପ୍ରସ୍ତୁତ ହୋଇ ସାରିଛି । କେତେ ମେଶିନ ଓ କଳ କବ୍ଜା ଉପକରଣ ଦରକାର, ତାହା ସ୍ଥିର ହୋଇଛି । ବର୍ତ୍ତମାନ କେବଳ ଦରକାର, ସେହି ମେସିନ ଓ ଉପକରଣ' । ପାର୍ଥିବ ସମ୍ପଦରେ ଆଜି ମାନବ ଯେତେ ସମୃଦ୍ଧ ଏଥିପୂର୍ବେ କୌଣସି ସମୟରେ ସେପରି ହୋଇଥିବା ଇତିହାସରେ ତ ନାହିଁ, ସ୍ୱପ୍ନରେ ମଧ୍ୟ କଳ୍ପନା କରି ଯାଇ ନାହିଁ । ନିଜର ଦୈହିକ ଅଭାବ ପୂରଣ କରିବାର ସମସ୍ତ ସାମଗ୍ରୀ ମନୁଷ୍ୟ ପ୍ରସ୍ତୁତ କରି ସାରିଛି । ତଥାପି,ପୃଥିବୀର କୌଣସି ସ୍ଥାନରେ ଶାନ୍ତି ନାହିଁ । ବିଷୟ-ଭୋଗ-ସାମଗ୍ରୀର ଚାରିପଟେ ବୁଲି ବୁଲି ବହୁଲୋକ ବୈକଲ୍ୟଶ୍ୱାସରେ ମରୁଛନ୍ତି । ବର୍ତ୍ତମାନ ଯୁଗରେ ପୁଣି ପେଟର ଭୋକ-ଠାରୁ ମନର ଭୋକ ସବୁଠାରୁ ବେଶୀ ହୋଇଛି । ଯାହାର ନାହିଁ, ତାହାର ଏକମାତ୍ର ଚିନ୍ତା—ଯାହା ନାହିଁ ତାହା କିପରି ମିଳିବ ? ଯାହାର ଅଛି, ତାହାର ମୁଣ୍ଡ ସବୁବେଳେ ଘୂରୁଛି, ଯେତେକ ଅଛି ସେତକ କିପରି ତାହାର ହୋଇ ରହିବ ଓ ଉତ୍ତରୋତ୍ତର ବଢ଼ିବ । ଭୟ ଓ ଅଭାବର ତାଡ଼ନାରେ ଧନୀ ଓ ଦରିଦ୍ର କାହା ମନରେ ଶାନ୍ତି ନାହିଁ । ବିନୋବା ଦର୍ଶନର ମୌଳିକ କଥା ହେଉଛି, ଏହି ଅଶାନ୍ତିର ଅପନୋଦନ—ସ୍ଥାୟୀ ଶାନ୍ତିର ପ୍ରତିଷ୍ଠା ।

ବିନୋବା-ଦର୍ଶନ ଏ ଦେଶରେ ନୂଆ କଥା ନୁହେଁ; ଠିକ ସେପରି ମହାତ୍ମାଙ୍କ ଅହିଂସା ଏ ଦେଶରେ ନୂଆ କଥା ନ ଥିଲା । ଆମ୍ଭମାନଙ୍କୁ ତାହା ନୂଆ ଲାଗୁଛି, କାରଣ ଗତ କେତେ ଶହ ବର୍ଷ ଭିତରେ ଆମେ ଆମର ନିଜସ୍ୱ ଖାଲି ଯେ ହରାଇ ବସିଛୁ, ତାହା ନୁହେଁ, ଥିଲା ବୋଲି ପାସୋରି ମଧ୍ୟ ଦେଇଛୁ । ମହାତ୍ମା ଗାନ୍ଧୀ ଓ ବିନୋବାଜୀ ସେହି ପୁରୁଣା କଥାକୁ ଯୁଗୋପଯୋଗୀ କରି ଆମ୍ଭମାନଙ୍କ ଆଗରେ ବର୍ତ୍ତମାନ ଉପସ୍ଥାପିତ କରୁଛନ୍ତି ।

ପ୍ରାଚ୍ୟ ଓ ପାଶ୍ଚାତ୍ୟ ସଭ୍ୟତା ଭିତରେ ମୌଳିକ ପ୍ରଭେଦ ମାତ୍ର ଗୋଟିଏ । ସମାଜରେ ସମନ୍ୱୟ ଆଣିବାକୁ ସେମାନେ ଅଧିକାରକୁ ମୂଳ କରି ଚିନ୍ତା ଚଳାଇ ଆସିଛନ୍ତି । ଆମର ସମାଜର ନିୟନ୍ତା କର୍ତ୍ତବ୍ୟ । ତାହାର ନାଆଁ ପୁଣି ଧର୍ମ । ଏହି ପାର୍ଥକ୍ୟ ଆରମ୍ଭ ହୋଇଛି ଆଧୁନିକ ପାଶ୍ଚାତ୍ୟ ସଭ୍ୟତାର ପ୍ରଥମ ବିକାଶ ଦିନଠାରୁ । ତା ପୂର୍ବରୁ ଯିଶୁଖ୍ରୀଷ୍ଟ ତାଙ୍କର ବାର୍ତ୍ତା ପ୍ରଚାର କରିବାବେଳେ ପ୍ରାଚ୍ୟ ସଂସ୍କୃତିର ଗୋଟିଏ ନୂତନ ସଂସ୍କରଣ ଇଉରୋପ ମହାଦେଶକୁ ଦେଇଥିଲେ । ସେ ବି ସେହି କର୍ତ୍ତବ୍ୟ ଉପରେ ଜୋର ଦେଇ ପ୍ରଚାର କରିଥିଲେ । ସେ କହିଥିଲେ, "ରାଜାର ଯାହା ପ୍ରାପ୍ୟ ରାଜାକୁ ଦିଅ । ଅପରକୁ ତାହାର ପ୍ରାପ୍ୟ ଦେବା ଫଳରେ ଆମର ନିଜର ପ୍ରାପ୍ୟ ନିଜକୁ ଦେବାକୁ ଅପର ମନରେ ପ୍ରବୃତ୍ତି ଜାଗ୍ରତ ହେବ ।" ଯିଶୁଖ୍ରୀଷ୍ଟଙ୍କ ବାଣୀର ମର୍ମ ଆମ ସ୍ତରରେ ବୁଝିଲେ ହେଉଛି—ରାଜାଙ୍କର ପ୍ରାପ୍ୟ ପ୍ରଜା ଆମଠାରୁ ପାଇଲେ ଆମର ପ୍ରାପ୍ୟ ସେ ବଦଳ ବଳେ ଦେବେ ।

ବୋଧହୁଏ ପ୍ରଥମ ଯୁଗର ଖ୍ରୀଷ୍ଟାନ୍ ପ୍ରଜାଙ୍କ ପ୍ରାପ୍ୟ ରାଜାଙ୍କୁ ଦେଇ ରାଜା ତାଙ୍କର ଦେୟ କେତେ-ବେଳେ ଦେବେ, ତାହାକୁହିଁ ବୁଝି ରହିଲେ । ରାଜାଙ୍କ ଦେୟ ପ୍ରଜାଙ୍କୁ ବଳଣୀ ଖଡ଼ାଇ ଯୋଗ ପଡ଼ି ଦିଆଗଲା; ରାଜାଙ୍କଠାରୁ ସ୍ୱତଦାନ ନ ମିଳିବାରୁ ଇଂଲଣ୍ଡ ପ୍ରଭୃତି ରାଜ୍ୟରେ ଆରମ୍ଭ ହେଲା ବିଦ୍ରୋହ । ଆମେ ଏତିକି ଦେଲୁ, ତମେ ଏତେ ଦେବ—ଏହି ଭାବ ବଢ଼ାରୁ ପାଶ୍ଚାତ୍ୟ ସଭ୍ୟତାର ବିକାଶ । ପରସ୍ପରୀ

ରାଜାମାନଙ୍କ ସଙ୍ଗେ ସମାନ ପ୍ରତିଦ୍ୱନ୍ଦ୍ୱିତା କରିବାକୁ ଲୋକଶକ୍ତିକୁ ସଂଗଠିତ କରିଗଲା । ଅତ୍ୟାଚାର ବିରୁଦ୍ଧରେ ଲଢ଼ିବା ଅବସରରେ ନିଜର କର୍ତ୍ତବ୍ୟ ଉପରେ ଆଉ ନଜର ରହିଲା ନାହିଁ, ସବୁବେଳେ ଦୃଷ୍ଟି ରହିଲା ଅତ୍ୟାଚାରୀର ଅତ୍ୟାଚାର ଉପରେ । ଅନ୍ତର୍ଦୃଷ୍ଟି ସମ୍ପୂର୍ଣ୍ଣରୂପେ ଲୋପ ହୋଇ ବହିର୍ଦୃଷ୍ଟି ସମସ୍ତ ଚିନ୍ତାରାଜ୍ୟକୁ ଘୋଡ଼ାଇ ପକାଇଲା । ଇଂଲଣ୍ଡର ରାଜା ଜନ୍‌ଙ୍କ ସଙ୍ଗେ ବେପାରି ବୃଦ୍ଧିରେ ଯେଉଁ ଅଧିକାର ପ୍ରାପ୍ତି ଉଦ୍ୟମ ହୋଇଥିଲା, ତାହାର ବିକାଶ ହୋଇ ଇଂଲଣ୍ଡରେ ରାଜା ଚାର୍ଲସ୍ ଓ ଫ୍ରାନ୍ସର ରାଜା ଲୁଇଙ୍କର ମୁଣ୍ଡ କଟିଗଲା । ଅଧିକାର ପାଇଁ ଯୁଦ୍ଧ ରାଜପଣ ଲୋପ ହେବାରେ ଶେଷ ହେଲା ନାହିଁ । ରାଜାଙ୍କ ଶକ୍ତି ଲୁପ୍ତ ହେବାରେ ଦୃଷ୍ଟି ପଡ଼ିଲା ଧନୀଙ୍କ ଉପରେ ଓ ଧନୀଙ୍କ ପଡ଼ିବା ପରେ ମଧ୍ୟବିତ୍ତଙ୍କ ଉପରେ ରୁଷିଆରେ ଦରିଦ୍ର ଅସହାୟ ହେଲେ । ତାଙ୍କର ଶତ୍ରୁ ପୁଣି ବାହାରିଲେଣି ମଧ୍ୟବିତ୍ତ, ଧନୀ ଓ ରାଜା— ନୂତନ ଢଙ୍ଗରେ ଓ ନାମରେ ଠିକ୍ ଏପଟ ସେପଟ ହୋଇଯାଇଛି । ଷ୍ଟାଲିନ୍ ଯେଉଁ କ୍ଷମତା ଭୋଗକରି ମଲେ ଓ ଆଜି ମ୍ୟାଲେଙ୍କୋଭ ଯେଉଁ କ୍ଷମତା ଭୋଗ କରୁଛନ୍ତି ଇତିହାସରେ କୌଣସି ଜାର୍ ସେତିକି କ୍ଷମତା ଭୋଗ କରିଥିଲେ କି ନାହିଁ ସନ୍ଦେହ । ଜାର୍‌ମାନେ ନିଜର ମନ୍ତ୍ରୀ ଓ ପରାମର୍ଶଦାତାମାନଙ୍କ ବଳରେ ବଳୀୟାନ ହୋଇ ଥିଲେ । ଆଜି ମ୍ୟାଲେଙ୍କୋଭ ତାଙ୍କର ସହକର୍ମୀଙ୍କୁ ମଧ୍ୟ ଅବଲୀଳା କ୍ରମେ ମାରିଦେଇ ପାରୁଛନ୍ତି । ରୁଷିଆରେ ଯେଉଁ ବୈପ୍ଳବିକ ଦଳ ବା ଉଗ୍ରଦଳରେ ଦରିଦ୍ର ଜନତା ଜାର୍‌ଙ୍କୁ ହଟାଇ ଦେଇ ପାରିଥିଲେ, ଆଜି ସେତେ ସେପରି ସେହି ଦଳ ସେମାନଙ୍କୁ ଦାସ କରି ରଖିଛି । ସେହି ଦଳକୁ ପୁଣି ବହିର୍ମୁଖୀ କରିବା ଉଦ୍ଦେଶ୍ୟରେ ରୁଷିଆର ଶାସକମାନେ ନିଜର ପ୍ରଭାବ ସମସ୍ତ ପୃଥିବୀ ଉପରେ ପକାଇବାକୁ ବସିଛନ୍ତି । ପାଶ୍ଚାତ୍ୟ ସଭ୍ୟତାର ବିକାଶରେ ଯେଉଁମାନେ ରୁଷିଆର ପଛରେ ପଡ଼ିଯାଇଛନ୍ତି ସେହିମାନଙ୍କ ସଙ୍ଗେ ପ୍ରତିଦ୍ୱନ୍ଦ୍ୱିତା କରି ବର୍ତ୍ତମାନ ରୁଷିଆ କୂଟନୈତିକ ଯୁଦ୍ଧ ଚଳାଉଛି । ତାହାର ଦୁଇଟି ଫଳ ଘଟିପାରେ । ରୁଷିଆ ସେମାନଙ୍କୁ ନିଜ ପ୍ରଭାବରେ ଦବାଇ ନିଜ ମତବାଦର ସାମ୍ରାଜ୍ୟ ଭିତରେ ପୂରାଇ ଦେଇପାରେ । ଅପରପକ୍ଷେ ତାହାର ଅପ୍ରତ୍ୟକ୍ଷ ଚେଷ୍ଟାରେ ଇଂଲଣ୍ଡ, ଫ୍ରାନ୍ସ ଓ ଆମେରିକା ପ୍ରଭୃତି ଦେଶମାନଙ୍କରେ ଆଭ୍ୟନ୍ତରୀଣ ବିପ୍ଳବ ହୋଇ ବହିରାକ୍ରମଣ ବିନା କମ୍ୟୁନିଷ୍ଟ ମତବାଦ ସେହି ସେହି ଦେଶମାନଙ୍କରେ ପ୍ରତିଷ୍ଠା ଅର୍ଜି ପାରେ । ଏହାର ପ୍ରତିରୋଧ କରିବା ପାଇଁ ପ୍ରତ୍ୟେକ ଅ-କମ୍ୟୁନିଷ୍ଟ ଦେଶମାନଙ୍କରେ ପ୍ରବଳ ଉଦ୍ୟମ ଚାଲିଛି । ଦେଶ ଭିତରେ ବ୍ୟକ୍ତି ସ୍ୱାଧୀନତାକୁ ଖର୍ବକରି କମ୍ୟୁନିଜମ୍‌କୁ ନିପାତ କରିବାକୁ ବହୁ ଖେଳା ଲାଗିଛି ଓ କମ୍ୟୁନିଷ୍ଟ-ମାନଙ୍କ ଆକ୍ରମଣର ପ୍ରତିରୋଧ ପାଇଁ ଆପ୍ରାଣ ରଣସଜ୍ଜା ଚାଲିଛି । ଶତ୍ରୁକୁ ଆକ୍ରମଣ କରିବା ଆତ୍ମରକ୍ଷାର ଶ୍ରେଷ୍ଠ ଉପାୟ, ଏହି ନୀତିରେ ରୁଷିଆକୁ ଆକ୍ରମଣ କରିବା ପାଇଁ କଳ୍ପନା ବି ଅଛି । ଏହିପରି ସଭ୍ୟତାର ଚରମବିକାଶ ବେଳେ ସେହି ସଭ୍ୟତାର ଚରମ ବିନାଶ ହେବାର ଆଶଙ୍କା ସମସ୍ତଙ୍କୁ ଗ୍ରାସ କରିଛି । ଯେପରି ଜଣାଯାଉଛି, ପାଶ୍ଚାତ୍ୟ ଜଗତର ଚିନ୍ତାଧାରାର ସମୂଳ ପରିବର୍ତ୍ତନ ନ ହେଲେ ଉନ୍ନତ କରିବା ନାମରେ ସମସ୍ତେ ଧ୍ୱଂସ ହୋଇଯିବେ ।

ଆଶାର କଥା, ପାଶ୍ଚାତ୍ୟ ଦେଶରେ ମଧ୍ୟ ପଣ୍ଡିତମାନେ ନିଜ ସଭ୍ୟତାର ସମାଲୋଚନା କରିବାକୁ ଆରମ୍ଭ କଲେଣି । ଆଧୁନିକ ଦାର୍ଶନିକ ଦେଖିଲେଣି ଯେ ସେମାନଙ୍କର ସବୁକଥା ସବୁବେଳେ ଠିକ୍ ଓ ଅପରର ସବୁ ଖରାପ, ଏପରି ଭାବିବା ଠିକ୍ ନୁହେ । ବୈଜ୍ଞାନିକମାନେ ବୁଝିବାକୁ ଆରମ୍ଭ କରୁଛନ୍ତି, ଗତ ଶତାବ୍ଦୀରେ ସେମାନେ ଯାହା ଭାବୁଥିଲେ ଯେ ଗଣିତ ସମସ୍ତଙ୍କ ଉପରେ ଓ ତା ଉପରେ ଆଉ କେହି ନାହିଁ, ସେ କଥା ଠିକ ନୁହେ । ବିଜ୍ଞାନ ସୃଷ୍ଟିର କେତେକାଂଶ ବର୍ଣ୍ଣନା କରିବାରେ

ତା ବୁଝାଇବାରେ ସମର୍ଥ ହୋଇପାରେ; କିନ୍ତୁ ସୃଷ୍ଟିର ଭାଙ୍ଗିଯାଏ ମଧ୍ୟ ନିଜେ ଗଢ଼ି ପାରିବ ନାହିଁ ଏ କଥା ଆଇନଷ୍ଟାଇନଙ୍କଠାରୁ ଆରମ୍ଭ କରି ଅଧିକାଂଶ ଶ୍ରେଷ୍ଠଭାଗ ବୈଜ୍ଞାନିକ ସ୍ୱୀକାର କଲେଣି । ନିଜ ସାମର୍ଥ୍ୟ କଳନା କରି ସାରିବା ପରେ ସେମାନେ ଧରଣି ଦେଇଛନ୍ତି ସମାଧାନର ସୂତ୍ର ପାଇଁ, ନିଜର ସତ୍ତାନୁସନ୍ଧାନ ଭିତରୁ ଯେ ଯାହା ପାଇଲେ ପଛ ଯାଉଛନ୍ତି ତାହା ସୂତ୍ର ବୋଲି ବର୍ଟ୍ରାଣ୍ଡ ର'ସେଲ ସେଇ ଫିଟାଇଛନ୍ତି ଓ ତାହା ଠିକ୍ ଶିବ ନୁହେଁ ବୋଲି ଜାଣି ପୁଣି ଖୋଜୁଛନ୍ତି । ପ୍ରକୃତର ଉଦ୍‌ଘାଟନ ପାଇଁ ହୋଇଛି ଏ ବଡ଼ ଆଶା ଯେ, ଏ ଶିବ ଖୋଜା ଆରମ୍ଭ ହେଲାଣି ।

ମନୁଷ୍ୟର ବ୍ୟକ୍ତିଗତ ଜୀବନରେ ଯେପରି, ସାମାଜିକ ଜୀବନରେ ସେପରି ପ୍ରକୃତ ବିକାଶର ଏହାହିଁ ହେଲା । ଇଂଲଣ୍ଡର ଲିଣ୍ଡବର୍ଗ ଏବେ ଖବର କାଗଜରେ ଏ କଥାଟି ବଡ଼ ସୁନ୍ଦର ଭାଷାରେ ପ୍ରକାଶ କରିଛନ୍ତି । ମନୁଷ୍ୟ ପ୍ରଥମ ଯୌବନର ଉଦ୍ଦାମତାରେ ଅବାଟକୁ ମଧ୍ୟ ବାଟ ବୋଲି ମନେକରେ । ପୂର୍ଣ୍ଣ ଯୌବନରେ ଯେବେ ସେହି ବାଟଟି ଧରେ, ତାହା ଠିକ୍ ବାଟ ବୋଲି ଏତେ ଆନ୍ତରିକତା ସହିତ ବିଶ୍ୱାସ କରେ ଯେ, ଅନ୍ୟ ବାଟ ଧରିଲେ ସେ ଅସହିଷ୍ଣୁ ହୋଇପଡ଼େ । ବୟସ ଯେତିକି ବଢ଼େ ଓ ମନ ପୋଷକ ହୁଏ, ନିଜ ମନରେ ସେତିକି ସଂଶୟ ଜାତ ହୁଏ । ନିଜର ସବୁ ନିର୍ଭୁଲ ବୋଲି ସେ ଅନ୍ତଃକରଣରେ ଆଉ ବିଶ୍ୱାସ କରି ପାରେ ନାହିଁ । ଫଳରେ ଅନ୍ୟର ଚିନ୍ତା ପ୍ରତି ଉଦାରତା ବଢ଼େ । ଅନ୍ୟ ଯାହା କରୁଛି ତାହା ପସନ୍ଦ ନ କରି ପାରିଲେହେଁ ତା ବିରୁଦ୍ଧରେ ଅସ୍ତ୍ର ଉଠାଇବାକୁ ପ୍ରବୃତ୍ତି ହୁଏ ନାହିଁ । ପାଶ୍ଚାତ୍ୟ ସଭ୍ୟତାର ବୟସ ବୃଦ୍ଧି ହୋଇ ସେହି ସଂଶୟର ବେଳ ଆସି ପହଞ୍ଚିଛି । ଯେଉଁ ଦେଶମାନେ ଆଣବିକ ବୋମା ଓ ଉଦ୍‌ଯାନ ବୋମା ପ୍ରସ୍ତୁତ କରିବାରେ ନିମଗ୍ନ ଲାଗିଛନ୍ତି ଓ ପୃଥିବୀରେ ଶାନ୍ତି ସ୍ଥାପନ କରିବା ପାଇଁ ଏ ଗୁଡ଼ିକ ସାଧନ ବୋଲି ମନେ କରୁଛନ୍ତି, ସେମାନଙ୍କ ମନରେ ଏବେ ସଂଶୟ ଜାତ ହେଉଛି ଯେ, ଉଦ୍‌ଯାନ ବୋମା ପଡ଼ିବା ଫଳରେ ଯେଉଁ ୩ ଶହ ବର୍ଗମାଇଲ ଅସ୍ତ୍ରାଘାତ ଜାତ ହେବ, ତା ଭିତରେ ଶାନ୍ତି ରହିବ କେଉଁଠି । କିନ୍ତୁ ଅନ୍ୟ କେଉଁ ଉପାୟରେ ଶାନ୍ତି ମିଳିବ, ସେ ବିଷୟରେ କୌଣସି ଚିନ୍ତା ଏ ପର୍ଯ୍ୟନ୍ତ ପାଶ୍ଚାତ୍ୟ ଜଗତରେ ବୈଜ୍ଞାନିକ ସ୍ତରରେ ବାହାରି ନାହିଁ । ବାହାରିବା ସମ୍ଭବ ବି ନୁହେଁ; କାରଣ ସଭ୍ୟତାର ଚରମ ବିକାଶରେ ଯେଉଁ ଅନୁଭୂତି ବା ଜ୍ଞାନ ମିଳିବାର କଥା, ସେ ବୟସ ପାଶ୍ଚାତ୍ୟ ସଭ୍ୟତାର ହୋଇ ନାହିଁ । ବାଳକ ଜ୍ଞାନରେ ବୃଦ୍ଧ ହୋଇପାରେ, କିନ୍ତୁ ବୃଦ୍ଧର ଅନୁଭୂତି ସେ ପାଇବ କିପରି ଯାଇ ବୟସ ହେଲେ ।

ସେହି ପରିଣତ ବୟସ ପ୍ରାଚ୍ୟ ସଭ୍ୟତାର ହୋଇଥିଲେ । ତାହାରିର ପ୍ରଭାବ ଫଳରେ ଭାରତୀୟ ମୂକ ହୋଇ ଯାଇଥିଲେ, ଠିକ୍ ଯେପରି ଟୋକାମାନଙ୍କ ଦୌରାତ୍ମ୍ୟ ଦେଖିଲେ ବୁଢ଼ାମାନେ ପାଟି ନ ଫିଟାଇ ଚୁପ ହୋଇ ରହି ଯାଆନ୍ତି । ଭାରତୀୟ ଦାର୍ଶନିକ କହିଛନ୍ତି (ଯୁବକମାନଙ୍କର ପ୍ରକୃତ ବିକାଶ ଉଦ୍ଦେଶ୍ୟରେ) ଜ୍ଞାନୀ ବୃଦ୍ଧମାନେ ନିଜ ଜ୍ଞାନକୁ ଗୁପ୍ତ ରଖି ବାଳୁତ ଭଳି ଆଚରଣ କରିବା ଉଚିତ* । ଭାରତୀୟ ସଭ୍ୟତାର ଚରମ ବିକାଶରେ ଯେଉଁ ସଂସ୍କୃତି ଓ ସାହିତ୍ୟ ସୃଷ୍ଟି ଉଠିଥିଲା, ତାକୁ ମନରେ ଲୁଚାଇ ଦେଇ ସୁଦୀର୍ଘ ମାନବ ନାମରେ ଭାରତୀୟ ଲୋକେ ପାଶ୍ଚାତ୍ୟ ସଭ୍ୟତାର ଅନୁକରଣ କରିବାରେ ଲାଗିଥିଲେ । ବହୁଦିନ ପରେ ମହାତ୍ମାଜୀ ସାହସ କରି ପ୍ରାଚ୍ୟ ସଭ୍ୟତାର ମୁଖପାତ୍ର ହୋଇ ବାହାରିଲେ । ସେ ନୂଆ ରୂପରେ ପୁରୁଣା ଗୀତ ନିର୍ଦ୍ଦେଶକୁ ପୃଥିବୀ ଆଗରେ ଥୋଇଲେ

* ଅବ୍ୟକ୍ତଲିଙ୍ଗୋ ବ୍ୟକ୍ତାର୍ଥୋ ମନୀଷ୍ୟୁନ୍ମତ୍ତବାଳବତ୍
କବିର୍ମୂକବଦାତ୍ମାନଂ ସ ଦୃଷ୍ଟ୍ୟା ଦର୍ଶୟେନ୍ନୃଣାମ୍ (ଭାଗବତ ୧୮-୨୯)

ସାଧାରଣ ଲୋକେ ବୁଝି ପାରିବା ଭଳି ଭାଷାରେ । କିନ୍ତୁ ତାଙ୍କ ସମୟର ଭାରତ ଏତେ ଅବହେଳିତ ହୋଇ ଯାଇଥିଲା ଯେ, ତାଙ୍କ ସ୍ୱର ବାଣୀକୁ ଶୁଣିବ ନାହିଁ, ନିଜ ଦେଶ ଭିତରେ ବି ବହୁଲୋକ ତାଙ୍କ ମସ୍ତିଷ୍କର ସୁସ୍ଥତା ବିଷୟରେ ସନ୍ଦିହାନ ଥିଲେ । ୧୯୨୦-୨୧ରେ ଶ୍ରୀ ଶ୍ରୀନିବାସ ଶାସ୍ତ୍ରୀ ଓ ମିଷ୍ଟର ଜିନ୍ନାଙ୍କ ପରି ପଣ୍ଡିତମାନେ ତାଙ୍କ ମତ ଓ କାର୍ଯ୍ୟକ୍ରମ ବିଷୟରେ ଯେଉଁ ସନ୍ଦର୍ଭମାନ ପ୍ରକାଶ କରିଥିଲେ, ତାହା ଆଜି ହାସ୍ୟାସ୍ପଦ ହୋଇପାରେ, କିନ୍ତୁ ସେ କାଳରେ ବହୁଲୋକ ସେ ଲେଖାକୁ ବିଶେଷ ଗୁରୁତ୍ୱ ଦେଉଥିଲେ ।

ମହର୍ଷି ବିନୋବା ଚିନ୍ତା-ରାଜ୍ୟରେ ମହାତ୍ମା ଗାନ୍ଧୀଙ୍କର ଉତ୍ତରାଧିକାରୀ, ରାଜନୀତିରେ ଶ୍ରୀ ଜବାହରଲାଲ ନେହେରୁ ଯେପରି । ରାଜନୈତିକ ସ୍ୱାଧୀନତା ଆଣିବା ପାଇଁ ମହାତ୍ମା ଗାନ୍ଧୀ ଯେଉଁ ଅସ୍ତ୍ର ପ୍ରୟୋଗ କରିଥିଲେ ବିନୋବା ସେହି ଅସ୍ତ୍ରକୁ ସ୍ୱାଧୀନ ଭାରତର ସମସ୍ୟା ସମାଧାନରେ ଲଗାଇବା ଚେଷ୍ଟା ଆରମ୍ଭ କରିଛନ୍ତି । ଅସହଯୋଗ ଆନ୍ଦୋଳନ ଆରମ୍ଭରେ ମହାତ୍ମାଜୀଙ୍କ କଥାକୁ ଅନେକେ ଯେପରି ହସୁଥିଲେ, ବିନୋବାଙ୍କ ଭୂଦାନ ଯଜ୍ଞ ହେଉଛି ସେ ଦିନ ସେହିପରି ଉପହାସର ସାମଗ୍ରୀ ହୋଇଥିଲା । ଆଧୁନିକ ଯୁଗରେ ବିନୋବାଙ୍କ ଉଦ୍ୟମର କିଛି ଫଳ ହେବ ନାହିଁ ବୋଲି ଖାଲି ଯେ ବିଦେଶୀ ପଣ୍ଡିତମାନେ କହୁଥିଲେ ତା ନୁହେଁ; ଆମ ଦେଶର ଶାସକବର୍ଗ ମଧ୍ୟ ତାଙ୍କ କଥାକୁ ଫୁଙ୍କି ମାରି ଉଡ଼ାଇ ଦେଉଥିଲେ; କିନ୍ତୁ ବିନୋବା ଅପରର ସମାଲୋଚନାରେ ବିଚଳିତ ହୁଅନ୍ତେ ନାହିଁକି ? ସେ ନିଜର କର୍ତ୍ତବ୍ୟ କରିବାରେ ଲାଗିଲେ । ୫ ବର୍ଷ ଭିତରେ ସେ ଯାହା କରି ପାଇଛନ୍ତି, ସମଗ୍ର ସମସ୍ୟା ତୁଳନାରେ ତାହା ବେଶୀ ଆଖିଦୃଶିଆ ନ ହୋଇପାରେ; କିନ୍ତୁ ଏବେ ତାହାରିରେ ସେ ଯାହା କରିଛନ୍ତି, ତେଲେଙ୍ଗାନା ତୁଳନାରେ ତାହା ଶହେ ଗୁଣରୁ ଅଧିକ । ତାହାପରେ ଯାହା ହୋଇଛି, ତହିଁରୁ ଶହେ ଗୁଣ ବେଶୀ କାର୍ଯ୍ୟ ଓଡ଼ିଶାରେ ହୋଇ ପାରିବ ବୋଲି ଆଶା କରାଯାଏ । ତେଲେଙ୍ଗାନାରେ ସେ ଯେତିକି ହଜାର ଏକର ଜମି ପାଇଥିଲେ, ବିହାରରେ ସେ ସେତିକି ଲକ୍ଷ ଏକର ଜମିରୁ ଅଧିକ ପାଇଛନ୍ତି ସତ; କିନ୍ତୁ ବିହାରର ମନରେ ଆଖିକୁ ଦିଶିଲାଭଳି କୌଣସି ପରିବର୍ତ୍ତନ ଦେଖାଯାଇ ନାହିଁ । ଓଡ଼ିଶାରେ ସେତେ ଜମି ନ ମିଳି ପାରେ, କିନ୍ତୁ ଭାବପ୍ରବଣ ଓଡ଼ିଶା ଲୋକଙ୍କ ଭିତରେ ବିନୋବା ଯେ ବୈପ୍ଳବିକ ପରିବର୍ତ୍ତନ ଆଣି ପାରିବେ ବୋଲି ଆଶା ହେଉଛି, ତାଙ୍କର ବାଣୀ ଅପର ମୁଖରୁ ଶୁଣି, ସେ ଆସିବେ ଏହି ଖବରରେ ଉତ୍ସାହିତ ହୋଇ ଓଡ଼ିଶାର ୩୦ । ୩୨ ଖଣ୍ଡ ଗ୍ରାମର ଲୋକେ ନିଜର ସର୍ବସ୍ୱ ଦାନ କରି ସାରିଲେଣି । ସମବାୟ ମତରେ ଚାଷ କରିବା ପ୍ରସ୍ତାବ ଯେତେବେଳେ ପଡ଼େ, ଆମ ଦେଶର ବଡ଼ ବଡ଼ ଲୋକେ କହନ୍ତି, ଦରିଦ୍ର ଲୋକଙ୍କର ନିଜ ଗୁଣ୍ଠେ ଦିଗୁଣ୍ଠ ଜମିରେ ଏତେ ମାୟା ଯେ, ସେମାନେ କେବେହେଲେ ତାକୁ ସମବାୟ ଚାଷ ପାଇଁ କୋଠରେ ମିଶାଇ ଦେଇ ପାରିବେ ନାହିଁ । ସମବାୟ ଚାଷ କଥା ୧୦ ବର୍ଷ ହେଲା ପଡ଼ିଲାଣି; କିନ୍ତୁ ଏପର୍ଯ୍ୟନ୍ତ କୌଣସିଠାରେ ଏହା ଆମ୍ଭମାନଙ୍କ କର୍ତ୍ତୃତ୍ୱରେ ଆରମ୍ଭ ହୋଇ ସଫଳ ହେବାର ଜଣା ନାହିଁ । କିନ୍ତୁ କେତେ ଜଣ 'ବାବାଜୀ'ଙ୍କ ପଦ୍ମରେ ଖଣ୍ଡିଏ ଭୂଇଁ, ଦୁଇ ଖଣ୍ଡି ନୁହେଁ ୩୦ଟି ଗ୍ରାମର ସବୁ ଲୋକେ କିଛି ଫେରି ପାଇବାର ଆଶା ନ ରଖି ସବୁ ଏକାବେଳକେ ଦାନ କରି ଦେଇଛନ୍ତି । ଏହା ଦେଖିଲେ ସମାଲୋଚକର ମୁଣ୍ଡ ନଇଁ ପଡ଼ିବାର କଥା । ଆଉ ବେଶୀ ହେବ କି ନାହିଁ ଭବିଷ୍ୟତରେ କଥା । ଇତିମଧ୍ୟରେ ଯେତିକି ହୋଇ ସାରିଲାଣି ତାହା ତ ଆମେ ଅନ୍ୟ ଉପାୟରେ ଏ ପର୍ଯ୍ୟନ୍ତ କରିପାରି ନ ଥାଉଁ ।

ଭାରତ ସ୍ୱାଧୀନ ହୋଇଛି ସତ; କିନ୍ତୁ ପାଶ୍ଚାତ୍ୟ ଢଙ୍ଗରେ ଅଦ୍ୟାପି ସ୍ୱାଧୀନ ସରକାରମାନେ କାର୍ଯ୍ୟ ଚଳାଉଛନ୍ତି । ପୂର୍ବରେ କହିଛି, ନିଜର ଅଧିକାର ଖଟାଇ ବ୍ୟକ୍ତି ଓ ସମାଜର ଉନ୍ନତି କରିବା ପାଶ୍ଚାତ୍ୟ ସଭ୍ୟତାର ଢଙ୍ଗ । ବର୍ତ୍ତମାନ ଆମେ ଦେଶର ଶାସନ ଓ ଉନ୍ନୟନ ସେହି ଢଙ୍ଗରେ କରିବାକୁ ଲାଗି ଥାଉଁ । ଆଇନ କରି ସରକାରୀ କ୍ଷମତାବଳରେ ତାହାକୁ କାର୍ଯ୍ୟକାରୀ କରାଇବାକୁ ଆମେମାନେ ଉଦ୍ୟମ କରୁଥାଉଁ । ଉଦ୍ୟମରେ ହେଳା ନାହିଁ । ପର୍ବତ ପରି ପ୍ରସବ ବେଦନା ହେଉଛି ; କିନ୍ତୁ ଅଳ୍ପ ଶେଷରେ ମୂଷାଠାରୁ ବଡ଼ ପିଲା ଜନ୍ମ ହେଉଛି । ବିନୋବାଙ୍କ ପକ୍ଷରେ କିନ୍ତୁ ଠିକ ଓଲଟା ଫଳ ହେଉଛି । ଆମମାନଙ୍କର ଯେ କୌଣସି ଯୋଜନାକୁ କାର୍ଯ୍ୟକାରୀ କରିବାରେ ଶହକେ ୧୦ ଟଙ୍କା କର୍ତ୍ତାଙ୍କ ପିଛୁ ଖର୍ଚ୍ଚ ହୋଇ ଯାଉଛି । ବିନୋବା ହଜାରରେ ଶହେ କୋଟିରୁ ଅଧିକ ଦାମର ଜମି ପାଇଛନ୍ତି । କେତେ ଜଣଙ୍କର ଉଦ୍ୟମ ? କେତେ ବା ଖର୍ଚ୍ଚ ? ଦେଶର ପ୍ରତ୍ୟେକ ନାୟକ ଓ କର୍ମକର୍ତ୍ତାଙ୍କ ଏହା ପ୍ରଣିଧାନର ବିଷୟ । ସେହି ଜମି ମିଳୁଛି ତାହା ତେଣ୍ଡା ପକାଳ ନା ଭଲ ଜମି, ସେ ଜମି ଯେ ପାଇବେ ସେ ତାକୁ ଉଠିଆ କରିବେ ନା ପଡ଼ିଆ ରଖିବେ, ଏ ସବୁ ସମାଲୋଚନା ପତ୍ର ପତ୍ରିକାରେ ବହୁତ ହୋଇଛି । ନୂଆ କଥାରେ ରକ୍ଷଣଶୀଳମାନଙ୍କର ଯେଉଁ ପ୍ରତିକ୍ରିୟା ହୁଏ, ଏହା ସେଇଆ ।

ବିନୋବାଙ୍କ ଚେଷ୍ଟା ସଫଳ ହେବାର ମୂଳ କାରଣ କଅଣ ? ମନେ ହୁଏ ; ପ୍ରଧାନ କାରଣ ଭାରତର ସମସ୍ୟାକୁ ସେ ଭାରତୀୟ ଭାବରେ ସମାଧାନ କରିବାକୁ ବସିଛନ୍ତି । ଭାରତୀୟ ସଂସ୍କୃତିର ମର୍ମକୁ ସେ ଭଲ ବୁଝିଛନ୍ତି, ଭାରତୀୟ ସାହିତ୍ୟ ଓ ଧର୍ମଶାସ୍ତ୍ର ସବୁ ପଢ଼ିଛନ୍ତି ଓ ବିଦେଶୀ ଚିନ୍ତା ସଙ୍ଗେ ତାକୁ ତଉଲ କରି ଦେଖିଛନ୍ତି । ତାହାର ମର୍ମକୁ ଆଧୁନିକ ଯୁଗ ସଙ୍ଗେ ଖାପ ଖୁଆଇ କହୁଛନ୍ତି । ତେଣୁ ତାଙ୍କର କଥା ଭାରତୀୟ ଜନସାଧାରଣଙ୍କର ମନକୁ ଟେକୁଛି । ଯେଉଁମାନେ ଅଦ୍ୟାପି ପାଶ୍ଚାତ୍ୟ ସଭ୍ୟତାର ମୋହ ଛାଡ଼ି ପାରିନାହାନ୍ତି, ସେମାନେ ବିନୋବାଙ୍କ ଦୃଷ୍ଟିରେ ଆମ ଦେଶକୁ ଏ ପର୍ଯ୍ୟନ୍ତ ଦେଖି ପାରି ନାହାନ୍ତି ; କିନ୍ତୁ ଗାଁଗହଳର ଲୋକେ ତାଙ୍କ କଥା ବେଶ ବୁଝୁଛନ୍ତି । ଯେଉଁ ଦେଶର ଶହକେ ୯୦ ଲୋକ ଗାଆଁରେ ରହନ୍ତି ସେ ଦେଶର ଯେଉଁ ଶତକଡ଼ା ୧୦ ଜଣ ନିଜ ସଂସ୍କୃତିର ବାହାରେ ରହିବାକୁ ଚେଷ୍ଟା କରୁଛନ୍ତି, ସେମାନଙ୍କ ପାଇଁ ବିଶେଷ ଚିନ୍ତିତ ହେବାର କୌଣସି କାରଣ ନାହିଁ । ଘରର ପୁଅ ନିଶ୍ଚୟ ଘର ଧରିବ — ଟିକିଏ ଶୀଘ୍ର ହେଉ ବା ବିଳମ୍ବ ହେଉ । ଅନ୍ୟର ଆଖିରେ ହାତ ପୁରାଇ ବା ବେକରେ ଲୁଗା ପକାଇ ନିଜର ସ୍ୱାର୍ଥ ସାଧନ କରିବା ଏ ଦେଶର ପ୍ରକୃତିରେ ନାହିଁ । ମାଛିଟିଏ ମରିଗଲେ ଯେଉଁମାନେ ଆହା ବୋଲି କହନ୍ତି, ପିମ୍ପୁଡ଼ି ଗାତରେ ଦେଇ ଚିନି ପକାଇବା ଯେଉଁମାନଙ୍କ ପରମ୍ପରାଗତ ଅଛି, ସେମାନେ ମଣିଷର ରକ୍ତପାତ କରି ନିଜର ସ୍ୱାର୍ଥ ହାସଲ କରିବା ବହୁ ବିଳମ୍ବର କଥା ।

କହୁଥିଲି କରି ହେଉ ବା ବଳ ଖଟାଇ ହେଉ ଏ ଦେଶରେ ଲୋକେ ଅନ୍ୟ ଉପରେ ଅଧିକାର ଖଟାଇବାକୁ ପସନ୍ଦ କରନ୍ତି ନାହିଁ । ପ୍ରତ୍ୟେକେ ପ୍ରତ୍ୟେକର କର୍ତ୍ତବ୍ୟ କରିବାରେହିଁ ଅଧିକାର । ଅନ୍ୟର କର୍ତ୍ତବ୍ୟ କଅଣ ତାହା ମଧ୍ୟ କ୍ଷମତାରେ ସୂଚିତ କରାଯାଏ ନାହିଁ । ଅନ୍ୟ ତାହାର କର୍ତ୍ତବ୍ୟ କରିବା ଫଳରେ ମୁଁ ଯଦି ଉପକୃତ ହେବି ତାହା ହେଲେ ଅନ୍ୟକୁ କର୍ତ୍ତବ୍ୟ ନିର୍ଦ୍ଦେଶ ଦେବାର ଅଧିକାର ମଧ୍ୟ ମୋର ନାହିଁ । ସେ ଅଧିକାର ଭଗବାନ୍ ପକ୍ଷର, ଯେ କି ଅନ୍ୟ କାହାଦ୍ୱାରା ଉପକୃତ ହେବାର ଖୁବ ଉପରେ ନିଜକୁ ରଖିଛି — ଅର୍ଥାତ୍

ଅନ୍ୟ କାହାଠାରୁ କୌଣସି ଉପକାରର ଆଶା ରଖି ନାହାନ୍ତି । ଗାଆଁର ଭଲ ଲୋକମାନେ ଗାଆଁ ଲୋକମାନଙ୍କୁ କର୍ତ୍ତବ୍ୟ ନିର୍ଦ୍ଦେଶ ଦିଅନ୍ତି । ସାଧୁସନ୍ଥମାନେ ଦେଶର ସମୂହ କର୍ତ୍ତବ୍ୟ ସୂଚାଇ ଦିଅନ୍ତି । ମନୁଙ୍କଠାରୁ ଆରମ୍ଭ କରି ଆଜିପର୍ଯ୍ୟନ୍ତ ସେହିପରି ଚାଲି ଆସିଛି । ପୂର୍ବର ସେହି ମୁନିଋଷିମାନଙ୍କର ମହର୍ଷି ବିନୋବା ପ୍ରକୃତ ଉତ୍ତରାଧିକାରୀ ଓ ସେହିମାନଙ୍କ ଆଦର୍ଶରେ ସେ କୌଣସି ଭୋଗବିଳାସ, କ୍ଷମତା ବା ଅଧିକାରର ଆଶା ନ ରଖି ଲୋକଙ୍କ ମନରେ ଚିନ୍ତାର ବୀଜ ବପନ କରୁଛନ୍ତି । ନିଜ ସ୍ୱତ୍ୱ, ନିଜ ସର୍ବସ୍ୱ ଓ ନିଜ ଦେଶବାସୀଙ୍କ ପ୍ରତି ପୂର୍ଣ୍ଣ ଅନୁରାଗବାନ ହୋଇ ଡାକ ଦେଉଛନ୍ତି—ଦାନ କରି ପୁଣ୍ୟ ଅର୍ଜନ କର । ଆମ୍ଭମାନଙ୍କର ପିଲାଦିନେ ଉଦୁଉଦିଆ ଖରାବେଳେ ତତଲ ଦାଣ୍ଡରେ ଠିଆହୋଇ ବଇରାଗୀ ବ୍ରାହ୍ମଣ ଏହି ଡାକ ଦେଉଥିଲା, ଶୁଣା ଅଛି । ଆମ୍ଭମାନଙ୍କର ଘୃଣା ଓ ଅବଜ୍ଞାରେ ସେ ସ୍ୱର ଲିଭି ଯାଇଥିଲା । ଆଜି ଯୁଗପ୍ରବର୍ତ୍ତକ ବିନୋବାଜୀ ଶିକ୍ଷାଭିମାନୀ ଓ ଦର୍ପୀର ଅବଜ୍ଞାକୁ କାନ ନ ଦେଇ ପୁଣି ସେହି ସ୍ୱର ଆରମ୍ଭ କରିଛନ୍ତି । ତାଙ୍କର ତ୍ୟାଗ ଓ ସାଧନାର ପ୍ରଭାବରେ ଅବଜ୍ଞା କରିବାକୁ ଆସିଥିବା ଲୋକ ପୂଜା କରିବାକୁ ଆରମ୍ଭ କରୁଛନ୍ତି । ଯେଉଁମାନେ ଶହେ ଲୋକଙ୍କ ଛୋଟି ଛଟି ଶହେ ମାଣ କରିଥିଲେ, ସେମାନେ ଭଳିଆ ପଦକେ ହଜାର ହଜାର ମାଣ ଜମି ଦେଉଛନ୍ତି ।

ସମସ୍ତେ କହିଣ ଏହିପରି ଦେଇ ଦେବେ ? ଏତେ ସହଜରେ କିପରି ଆମ ସମସ୍ୟାର ସମାଧାନ ହୋଇଯିବ ? ଦାନରେ ସାମ୍ୟବାଦ ପ୍ରତିଷ୍ଠିତ ହୋଇଯିବ ? ମାଟି ଅଣିଲା କହିଣରେ କିପରି ପେଟ ପୂରି ଯିବ ? ଆଜି ଶିକ୍ଷିତ ସମାଜରେ ଏହିପରି ସଂଶୟ ଜାଗ୍ରତ ହେଉଛି । ଆମ ଶାସ୍ତ୍ରରେ ଅଛି, ଏପରି ସଂଶୟ ଜାଗ୍ରତ ହେବା ବି ଶ୍ଳାଘ୍ୟ । ପ୍ରକୃତ ଜ୍ଞାନଲାଭ ଓ ଦୃଢବସ୍ତୁ ପରିବର୍ତ୍ତନର ଏହାହିଁ ପ୍ରଥମ ସୋପାନ । ହୁଏତ ବିନୋବାଙ୍କ ପନ୍ଥାରେ ସମସ୍ତ ସମସ୍ୟା ସମାଧାନ ହେବ ନାହିଁ, ଯେପରି ଯେତେ ବର୍ଷା ହେଲେ ମଧ୍ୟ ସବୁ ଜମିରେ ଲଗାଣ ହୁଏ ନାହିଁ, ଅଧିକାଂଶ ଜମି ହୋଇଯାଏ । ସେହି ଜମିରେ ପାଣି ନ ମାଡ଼େ ସେଥିକୁ ଲୋକେ ପାଣି କୁଢ଼ାଇ କାମ ଚଳାଇ ନିଅନ୍ତି, ତା ପାଇଁ ଜଳସେଚନ ଯୋଜନା କରନ୍ତି । ବିନୋବା ପନ୍ଥାରେ ସେ ଚିନ୍ତା ବି ଅଛି । ଲୋକଙ୍କ କର୍ତ୍ତବ୍ୟ ପ୍ରବୃତ୍ତି ଜାଗ୍ରତ କରି, ସମସ୍ୟାର ବହୁଅଂଶ ବା କେତେକାଂଶ ସମାଧାନ କରି ଓ ଅଧିକାଂଶଙ୍କ ମନରେ ସମସ୍ୟା ସମାଧାନ ପାଇଁ ମତ ସୃଷ୍ଟି କରି ତାହା ପରେ ଯାହା ବାକି ରହିଯିବ, ସେଥିପାଇଁ ସରକାରୀ କଳର ସାହାଯ୍ୟ ନିଆଯାଇପାରେ; ଫଳତ ଉଦ୍‌ବାସୀଙ୍କୁ କ୍ଷମତା ବଳରେ ବାଣ୍ଟିଲୁ ଅଣାଯାଇ ପାରେ । ତାହା ନ କରି, ଲୋକଙ୍କ କର୍ତ୍ତବ୍ୟବୋଧ ଜାଗ୍ରତ କରିବା ଦିଗରେ ଉଦାସୀନ ରହି, ଖାଲି ଆଇନ ବଳରେ ଲୋକମଙ୍ଗଳ କରିବାର ଚେଷ୍ଟା କଲେ ସମାନ ଫଳ ତ ହେବ ନାହିଁ, ଗୋଦରୁ ଯେତେ କୋଡ଼ିବ ତହିଁରୁ ବେଶୀ ମାଡ଼ିବାର ଆଶଙ୍କା ରହିଯିବ । ଯେତେବେଳେ ଲୋକଙ୍କୁ ଖାଲି ଆଇନ ଶୃଙ୍ଖଳାରେ ବନ୍ଧାଇ ରଖିବାକୁ ଲୋଡ଼ା ଥିଲା, ସେତେବେଳେ ଯେତେ ଆଇନ ପ୍ରୟୋଜନ ଥିଲା ଆଜି ଲୋକମଙ୍ଗଳ ରାଷ୍ଟ୍ରର କାର୍ଯ୍ୟକ୍ରମରେ ସେଥିରୁ ଢେର ଅଧିକ ପ୍ରୟୋଜନ ହେବ । ଆଇନର ସଂଖ୍ୟା ଯେତିକି ବଢ଼ିବ ଲୋକଙ୍କର ବିରୋଧ ସେତିକି ତେଜିବ ଓ ତାକୁ ଚପାଇ ରଖିବା ପାଇଁ ପୁଣି ଆଇନ ଓ କ୍ଷମତାର ପ୍ରୟୋଜନ ହେବ । କୁକୁର ପିଲା ନିଜ ଲାଙ୍ଗୁଡ଼କୁ ଗୋଡ଼ାଇଲା ପରି ଆଇନ ଓ ତାହାର ପାଳନ ପାଇଁ ପୁଣି ଆଇନ, ଏହି ଯେଉଁ ଧାଉଡ଼ି ଲାଗିବ, ସେଥିରେ ଅସଲ କଥାଟି ପଛରେ ପଡ଼ିଯିବ । ପ୍ରତ୍ୟେକ ସୁଗଠିତ ଦେଶରେ ଶାସକ ଦରକାର, ଆଇନ ଦରକାର ଓ ଆଇନରକ୍ଷୀ ଦରକାର; କିନ୍ତୁ ସେ ସବୁ ସମଗ୍ର ଜନସାଧାରଣଙ୍କ

ପାଇଁ ପ୍ରୟୋଜନ ହୁଏ ନାହିଁ କି ପ୍ରଯୁକ୍ତ ହୁଏ ନାହିଁ । ଶବ୍ଦରେ ସେହି ଦୁଇ ସ୍ତର ଜଣ ଅବୁଝା ବାହାରନ୍ତି କେବଳ ତାଙ୍କର ପାଇଁ ଏ ସବୁ ମହତ୍ତ୍ୱ ଥାଏ ।

ଦେଶର ଅଧିକାଂଶ ଲୋକଙ୍କର ଏସବୁର ପ୍ରୟୋଜନ ହୁଏ ନାହିଁ । ସେମାନଙ୍କର ବୁଦ୍ଧି ଓ ଚରିତ୍ରର ବିକାଶ ଉପଯୋଗୀ ଶିକ୍ଷା ସନ୍ଥ ଓ ସାଧୁମାନଙ୍କ ଦ୍ୱାରା ସମ୍ଭବ ହୁଏ ଓ ଯେ ଧାରା ଲଭୁଛନ୍ତି ଲଭିବା ସକାଶ ସେହିପରି ସନ୍ଥମାନଙ୍କର ଅନୁଗାମୀ ଦଳ ଦରକାର ହୁଅନ୍ତି । ସେହି ଦଳ ସଂଗ୍ରହ କରିବାକୁ ଉପଯୋଗୀ ବୁଦ୍ଧିମାନ ଓ ଜୀବନଦାନ ମାଗୁଛନ୍ତି । ଭାରତର ପ୍ରାଚୀନ ସଂସ୍କୃତିରେ ଏହିପରି ବୁଦ୍ଧିମାନ ଓ ଜୀବନଦାନୀ ଲକ୍ଷ ଲକ୍ଷ ସଂଖ୍ୟାରେ ବାହାରିଥିଲେ । ସେ ଜୀବନଦାନ ଗତାନୁଗତିକ ଭାବରେ ଏପରି ଚାଲିଛି ଯାହା କୁମ୍ଭ, ପୁଷ୍କର ମେଳା ଓ ଉତ୍ସବାଦିରେ ଦେଖାଯାଏ; କିନ୍ତୁ ଏହି ସାଧୁ ସନ୍ନ୍ୟାସୀମାନେ ଆଧୁନିକ ଜଗତ ସଙ୍ଗେ ଯୋଗସୂତ୍ର ଛିଣ୍ଡାଇ ଦେଇଥିବାରୁ ଜୀବନଦାନ କରନ୍ତି ବୋଲି କହୁଛନ୍ତି; କିନ୍ତୁ ତାହିଁର କରୁଛନ୍ତି ଏକେ ପରସ୍ପର ବୃଦ୍ଧିପାଇଁ ନାହାନ୍ତି । ଧର୍ମର ମୂଳଦୁଆରେ କର୍ତ୍ତବ୍ୟର ଯେଉଁ ଉପଦେଶ ଋଷିମାନେ ଦେଇଛନ୍ତି, ତାହା ଅନୁଭବ ସ୍ପଷ୍ଟ ହେଲା ପରେ ଏ ଦେଶର ମନୀଷୀମାନଙ୍କର ଚରିତ୍ରର ଅମୂଲ୍ୟ ବଳିଦାନ ଓ ବହୁସଂଖ୍ୟାରେ ଜୀବନଦାନ ନିଶ୍ଚୟ ବାହାରିବେ । ତେବେ ଯାଇଁ ଏ ଦେଶ ପରମୁଖାପେକ୍ଷୀ ନ ହୋଇ ନିଜ ଶକ୍ତିରେ ଅଗ୍ରସର ହେବାକୁ ସମର୍ଥ ହେବ ଓ ପୃଥିବୀ ଯେଉଁ ଶାନ୍ତି ପାଇଁ ବ୍ୟାକୁଳ ହେଉଛି ତାହାର ନିର୍ଦ୍ଦେଶ ଏହି ଭୂମିରୁ ମିଳି ପାରିବ ।





ବିଦ୍ୟୁତ ଶକ୍ତିର ଭଣ୍ଡାର ମାଛକୁଣ୍ଡ ନଦୀ

ମନୋରମ ଓ ସୁପ୍ରଶସ୍ତ କଲଙ୍ଗାଘାଟ ସେତୁ .

# ଉନ୍ନୟନ ପଥେ ଓଡ଼ିଶା

[ ସ୍ୱାଧୀନତାର ସାତବର୍ଷବ୍ୟାପୀ ପ୍ରଚେଷ୍ଟାର ଫଳ ]

## ଆର୍ଥିକ ସ୍ଥିତି

ନିମ୍ନଲିଖିତ ତାଲିକାରୁ ୧୯୪୮-୪୯ ରୁ ୧୯୫୪-୫୫ ମଧ୍ୟରେ ଓଡ଼ିଶାର ଆର୍ଥିକ ସ୍ଥିତି ବୁଝାପଡ଼ିବ ।

| ବର୍ଷ | ରାଜସ୍ୱ (ହଜାରରେ ହିସାବ) | ରାଜସ୍ୱରୁ ଖର୍ଚ୍ଚ (ହଜାରରେ ହିସାବ) | ବଳକା (+) ନିଅଣ୍ଟ (—) (ହଜାରରେ ହିସାବ) |
|---|---|---|---|
| ୧୯୪୮-୪୯ | ୬,୧୯,୯୨ | ୭,୩୪,୧୦ | (—) ୧,୧୪,୧୮ |
| ୧୯୪୯-୫୦ | ୧୦,୮୨,୪୫ | ୧୧,୪୬,୫୧ | (—) ୬୪,୦୬ |
| ୧୯୫୦-୫୧ | ୧୦,୩୧,୧୧ | ୧୨,୦୦,୮୯ | (—) ୧,୬୯,୭୮ |
| ୧୯୫୧-୫୨ | ୧୧,୯୬,୪୩ | ୧୦,୮୫,୭୮ | (—) ୧,୧୦,୬୫ |
| ୧୯୫୨-୫୩ | ୧୨,୭୨,୦୯ | ୧୧,୬୧,୫୬ | (—) ୧,୧୦,୫୩ |
| ୧୯୫୩-୫୪ (ସଂଶୋଧିତ) | ୧୨,୪୬,୬୧ | ୧୪,୭୬,୭୭ | (—) ୨,୩୦,୧୬ |
| ୧୯୫୪-୫୫ (ବଜେଟ) | ୧୪,୧୨,୪୨ | ୧୪,୮୫,୮୧ | (—) ୭୩,୩୯ |

ଏ ସମସ୍ତ ମଧ୍ୟରେ ଜମା ଓ ଖର୍ଚ୍ଚ ଉଭୟ ବଢ଼ିଅଛି । ୧୯୫୩-୫୪ ତୁଳନାରେ ୧୯୫୪-୫୫ରେ ରାଜସ୍ୱ ୧,୬୫,୮୧ ହଜାର ଟଙ୍କା ବଢ଼ିବ ବୋଲି ଆଶା କରାଯାଉଛି । କେନ୍ଦୁପତ୍ର ବୃଦ୍ଧିରେ ଜଙ୍ଗଲ ବିଭାଗରୁ ଓ ଗ୍ରାସକୁଭ ଲଣ୍ଡ୍ ଅର୍ଗାନିଜେସନରୁ ୩୫ ଲକ୍ଷ ଟଙ୍କା ମିଳିବ । ବସ୍ ଟିକସ ବାବଦରୁ ୨୦ ଲକ୍ଷ ଟଙ୍କା, ଖଣିମାନଙ୍କ ବାବଦରୁ ୨୨ ଲକ୍ଷ ଟଙ୍କା ଓ ପୂର୍ତ୍ତ ସରଞ୍ଜାମ ବାବଦରୁ ୨୬ ଲକ୍ଷ ଟଙ୍କା ମିଳିବ । ଭାରତ ସରକାର ପ୍ରାଥମିକ ଶିକ୍ଷା ଓ ଆଦିବାସୀ ବିଭାଗ ପାଇଁ ୧୪ ଲକ୍ଷ ଟଙ୍କା ଦେବେ ଏବଂ କୃଷି-କଲେଜ ସ୍ଥାପନ ପାଇଁ ୧୦ ଲକ୍ଷ ଟଙ୍କା ଦେବେ । ଏହାଛଡ଼ା ପୂର୍ତ୍ତ ବୋନସ ଟଙ୍କା ବାବଦରେ ୩୯ ଲକ୍ଷ ଟଙ୍କା ରାଜସ୍ୱରେ ମିଶିବ । ୧୯୫୨-୫୩ ଅପେକ୍ଷା ୧୯୫୩-୫୪ ରେ ଖର୍ଚ୍ଚ ନିମ୍ନଲିଖିତ ବାବଦମାନଙ୍କରେ ୩,୧୫,୨୧ ହଜାର ଟଙ୍କା ଅଧିକ ହେବ, ଯଥା— ଭୂରାଜସ୍ୱ, ମଟର ଭେହିକଲ୍ସ ଆକ୍ଟ, ସାଧାରଣ ଶାସନ, ଶିକ୍ଷା, ପୂର୍ତ୍ତ ଓ ଗ୍ରାମଗୋଷ୍ଠୀ ଯୋଜନା ।

୧୯୫୪-୫୫ରେ ଉନ୍ନୟନ ଓ ସାଧାରଣ ଅନାଦେୟ ଯୋଜନାରେ ୧, ୩,୯୧ ହଜାର ଟଙ୍କା ଖର୍ଚ୍ଚ ହେଉଥିବାରୁ ଖର୍ଚ୍ଚ ୧୯,୦୪ ହଜାର ଟଙ୍କା ବୃଦ୍ଧି ପାଇବ । ଅନ୍ୟପକ୍ଷରେ ରାଜଧାନୀ ନିର୍ମାଣ, ବନ୍ୟା ଓ ମଟର ସରବରାହ ବାବଦ ଖର୍ଚ୍ଚ ରାଜସ୍ୱରୁ ନିଆଯାଇ କାପିଟାଲ ଆକାଉଣ୍ଟର ଅନ୍ତର୍ଭୁକ୍ତ

କରାଯାଇଛି ଏବଂ ଭାରତ ସରକାରଙ୍କଠାରୁ ମିଳୁଥିବା ଋଣ ଦ୍ୱାରା ଯେ ଖର୍ଚ୍ଚ ତୁଳାଯିବ ।

### ଆଭ୍ୟନ୍ତରୀଣ ସମୀକ୍ଷା ସଂସ୍ଥାର ପ୍ରସାର

ଏ ସଂସ୍ଥା ୧୯୪୦ଠାରୁ କାର୍ଯ୍ୟକାରୀ ହୋଇଅଛି ଏବଂ ସରକାରଙ୍କ ଭିନ୍ନ ବିଭାଗର, ହେଡ୍‌ସ ଅଫ୍ ଡିପାର୍ଟମେଣ୍ଟମାନଙ୍କର, ଜିଲ୍ଲା ମାଜିଷ୍ଟ୍ରେଟ ଓ ଅନ୍ୟାନ୍ୟ ଅଫିସରମାନଙ୍କର ଅଫିସ ହିସାବ ସମୀକ୍ଷା କରୁଅଛି । ଭାରତର ଅଡ଼ିଟ୍ କୋଡ୍, ଆଇନ ଅନୁସାରେ କେତେକ ସ୍ୱତନ୍ତ୍ର ବାବଦ ଆୟର ସମୀକ୍ଷା କରିବାକୁ ବାଧ୍ୟ ନୁହନ୍ତି ବୋଲି ୧୯୫୪ ଏପ୍ରେଲ ପହିଲାଠାରୁ ଏ ସଂସ୍ଥା ଅବକାରୀ ଆୟ, ବଣିକର ଆୟ ଓ ଜଙ୍ଗଲ ବିଭାଗ ଆୟର ସମୀକ୍ଷା କରୁଛନ୍ତି ।

### ସ୍ୱାୟତ୍ତଶାସନ ଓ ଏଣ୍ଡାଉମେଣ୍ଟ-ହିସାବର ସମୀକ୍ଷା

ଅଞ୍ଚଳ ଶାସନର ପ୍ରବର୍ତ୍ତନ ପରେ ସ୍ୱାୟତ୍ତ ଶାସନ ଅନୁଷ୍ଠାନମାନଙ୍କ ହିସାବ ସମୀକ୍ଷା କରିବାକୁ ଆକାଉଣ୍ଟାଣ୍ଟ ଜେନେରାଲ ଅନିଚ୍ଛା ପ୍ରକାଶ କରିବାରୁ ରାଜ୍ୟ ସରକାର ୧ । ୪ । ୫୫ ଠାରୁ ଏ ସମୀକ୍ଷାର ଭାର ଓ ଏଥିପାଇଁ ନିଯୁକ୍ତ ଥିବା କର୍ମଚାରୀଙ୍କ ଭାର ଗ୍ରହଣ କରିଅଛନ୍ତି ।

ଆକାଉଣ୍ଟାଣ୍ଟ ଜେନେରାଲ ଓଡ଼ିଶା ଏଣ୍ଡାଉମେଣ୍ଟମାନଙ୍କର କୋଷାଧ୍ୟକ୍ଷ କାର୍ଯ୍ୟ ଏ ପର୍ଯ୍ୟନ୍ତ କରୁଥିଲେ; କିନ୍ତୁ ସମ୍ବିଧାନ ଅନୁସାରେ ଏ କାର୍ଯ୍ୟ ତାଙ୍କ କର୍ତ୍ତବ୍ୟର ବହିର୍ଭୂତ ବିବେଚିତ ହେବାରୁ ବର୍ତ୍ତମାନ ୧ । ୪ । ୫୪ ଠାରୁ ଓଡ଼ିଶା ସରକାରଙ୍କ ଅର୍ଥବିଭାଗ ସେକ୍ରେଟେରୀ ଏ କାର୍ଯ୍ୟ କରୁଅଛନ୍ତି ।।

## ଶିକ୍ଷା

ନିରକ୍ଷରତା ନିବାରଣ ପାଇଁ ବ୍ୟବସ୍ଥା କରିବା ସଙ୍ଗେ ସଙ୍ଗେ ସରକାର ଶିକ୍ଷାର୍ଥୀମାନଙ୍କୁ ଆତ୍ମ-ନିର୍ଭରଶୀଳ କରିବା ପାଇଁ ଓ ଭବିଷ୍ୟତ ଗୋଟିଏ କର୍ମତତ୍ପର ସମାଜ ଗଠନ କରିବାପାଇଁ ପ୍ରାଇମେରୀ-ସ୍କୁଲମାନଙ୍କରେ ମୌଳିକ ଶିକ୍ଷା ପ୍ରସାର ପାଇଁ ସମ୍ୟକ ଧ୍ୟାନ ଦେଇଅଛନ୍ତି ।

### ପ୍ରାଇମେରୀ ଶିକ୍ଷା

୧୯୫୩-୫୪ର ଆରମ୍ଭରେ ୫୦୦ ନୂଆ ନିମ୍ନ ପ୍ରାଇମେରୀ ସ୍କୁଲ ଖୋଲିବାକୁ ଓ ୩୨ଟି ନିମ୍ନ ପ୍ରାଇମେରୀ ସ୍କୁଲକୁ ଉଚ୍ଚ ପ୍ରାଇମେରୀ ସ୍କୁଲରେ ପରିଣତ କରିବାକୁ ଓ ୭୦ଟି ନୂଆ ମୌଳିକ ସ୍କୁଲ ଖୋଲିବାକୁ ସରକାର ମଞ୍ଜୁରି ଦେଇଅଛନ୍ତି । ଏକ ଶିକ୍ଷକ ଥିବା ପ୍ରାଇମେରୀ ସ୍କୁଲମାନଙ୍କରେ ୩୦୦ ଜଣ ଅଧିକ ଶିକ୍ଷକ ନିଯୁକ୍ତ କରାଯାଇଅଛନ୍ତି । ଶିକ୍ଷିତ ବେକାରମାନଙ୍କୁ କାର୍ଯ୍ୟ ଯୋଗାଇବା ପାଇଁ ୧୨୦୦୦ ନୂଆ ନିମ୍ନ ପ୍ରାଇମେରୀ ସ୍କୁଲ ଖୋଲାଯାଇଛି ।

### ବାଧ୍ୟତାମୂଳକ ଶିକ୍ଷା

ଆଗରୁ ପାରଲାଖେମୁଣ୍ଡି ଓ ବାଙ୍କୀ (ସହର ଅଞ୍ଚଳ)ରେ ବାଧ୍ୟତାମୂଳକ ଶିକ୍ଷା ପ୍ରବର୍ତ୍ତନ କରାଯାଇଥିଲା । ଏବେ ପୁଣି ପାଞ୍ଚଟି ସ୍ଥାନରେ ଅର୍ଥାତ ଆଠଗଡ଼, କାଣ୍ଟାବାଡ଼ା, ଅନୁଗୁଳ, ସୁନ୍ଦରଗଡ଼ ଓ ଅଠମଲ୍ଲିକ ଥାନାରେ ବାଧ୍ୟତାମୂଳକ ଶିକ୍ଷା ପ୍ରବର୍ତ୍ତନ କରାଯାଇଅଛି । ଏ ଯୋଜନାନୁଯାୟୀ ୫୦ଟି ନୂଆ ସ୍କୁଲ ଖୋଲାଯାଇଅଛି ଏବଂ ୨୭୯ ଜଣ ନୂଆ ଶିକ୍ଷକ ନିଯୁକ୍ତ ହୋଇଅଛନ୍ତି ।

### ଟ୍ରେନିଙ୍ଗ୍

ପ୍ରାଇମେରୀ ସ୍କୁଲ ମାନଙ୍କରେ କାର୍ଯ୍ୟ କରୁଥିବା ଶିକ୍ଷକମାନଙ୍କ ମଧ୍ୟରୁ ଶତକଡ଼ା ୪୦ ଜଣ ଟ୍ରେନିଙ୍ଗ୍ ପାଇଅଛନ୍ତି । ଅନ୍ୟାନ୍ୟଙ୍କ ଟ୍ରେନିଙ୍ଗ ପାଇଁ ୭ଟି ନୂଆ ଏଲିମେଣ୍ଟାରି ଟ୍ରେନିଙ୍ଗ୍ ସ୍କୁଲ ଖୋଲାଯାଇଅଛି ଏବଂ ଆଗରୁ ଥିବା ୨୩ଟି ଟ୍ରେନିଙ୍ଗ୍ ସ୍କୁଲରେ ଅଧିକ ସ୍ଥାନ

ଗ୍ରହଣ କରିବାର ବ୍ୟବସ୍ଥା କରାଯାଇଅଛି । ମୌଳିକ ଶିକ୍ଷାରେ ପ୍ରାଇମେରୀ ଶିକ୍ଷକମାନଙ୍କୁ ସଂକ୍ଷିପ୍ତ ଟ୍ରେନିଙ୍ଗ୍ ଦେବାକୁ ୨ଟି ଭ୍ରାମ୍ୟମାଣ ଟ୍ରେନିଙ୍ଗ୍ ସ୍କ୍ୱାଡ୍ ନିଯୁକ୍ତ କରାଯାଇଅଛି । ବର୍ତ୍ତମାନ ସ୍କ୍ୱାଡ୍‌ମାନଙ୍କ ମୋଟସଂଖ୍ୟା ୫ ହୋଇଅଛି । ପରିବର୍ତ୍ତିତ ପାଠ୍ୟ ନିର୍ଦ୍ଦେଶ ଅନୁସାରେ ଶିଳ୍ପ ଉପକରଣ କ୍ରୟ କରିବାକୁ ୬୦୦୦ ପ୍ରାଇମେରୀ ସ୍କୁଲକୁ ସ୍କୁଲ ପିଛା ଟ ୨୫୲ ହିସାବରେ ମୋଟ ଟ ୧,୫୦,୦୦୦୲ ଦିଆଯାଇଅଛି ।

ପ୍ରାଇମେରୀ ସ୍କୁଲ ଶିକ୍ଷକମାନଙ୍କ ଦରମା ୧।୩।୫୪ରୁ ଟ ୪୲ ହାରରେ ବଢ଼ାଇ ଦିଆଯାଇଅଛି ଏବଂ ସେମାନଙ୍କୁ ପ୍ରଭିଡେଣ୍ଟ ଫଣ୍ଡର ସୁବିଧା କରି ଦିଆଯାଇଅଛି ।

## ସେକେଣ୍ଡାରୀ ଶିକ୍ଷା

୧୯୫୨-୫୩ରେ ହାଇସ୍କୁଲ ମାନଙ୍କ ସଂଖ୍ୟା ୨୦୦ ଥିବା ସ୍ଥଳେ ୧୯୫୩-୫୪ରେ ସେମାନଙ୍କ ସଂଖ୍ୟା ୨୦୯ ହୋଇଅଛି । ମାଇନର ସ୍କୁଲମାନଙ୍କ ସଂଖ୍ୟା ୫୭୮ରୁ ବଢ଼ି ୫୬୦ ହୋଇଅଛି । ସେକେଣ୍ଡାରୀ ସ୍କୁଲମାନଙ୍କ ଘର ଓ ଉପକରଣ ପାଇଁ ଆଗରୁ ଦିଆଯାଇଥିବା ଗ୍ରାଣ୍ଟ ଉପରେ ୪.୨୨ ଲକ୍ଷ ଟଙ୍କା ଅଧିକା ଗ୍ରାଣ୍ଟ କରାଯାଇଅଛି । ସେକେଣ୍ଡାରୀ ଶିକ୍ଷା ଆଇନ ୨୩।୬।୫୩ ତାରିଖରେ ରାଜ୍ୟପାଳଙ୍କ ମଞ୍ଜୁରି ପାଇଅଛି । ତଦନୁସାରୀ ବୋର୍ଡ଼ ଅଫ୍ ସେକେଣ୍ଡାରୀ ଏଜୁକେଶନ ଗଠିତ ହେଉଛି ।

## ବିଶ୍ୱବିଦ୍ୟାଳୟ ଶିକ୍ଷା

କଟକ ରେଭେନ୍ସା କଲେଜରେ ମନୋବିଜ୍ଞାନରେ ବି.ଏ. ଅନର୍ସ ଓ ଏମ.ଏ. କ୍ଲାସ ଖୋଲାଯାଇଛି । ବିଭିନ୍ନ ଗବେଷଣା ଯୋଜନାକୁ ସାହାଯ୍ୟ କରିବା ନିମନ୍ତେ ବୋର୍ଡ଼ ଅଫ୍ ସାଇଣ୍ଟିଫିକ ରିସର୍ଚ୍ଚଙ୍କ ହାତରେ ଟ ୨୬,୫୬୦୲ ଦିଆଯାଇଅଛି । ଆଗେ ସିନିଅର କଲେଜ ବୃତ୍ତି ଓ ଜୁନିଅର କଲେଜ ବୃତ୍ତିର ସଂଖ୍ୟା ୧ ଓ ୨୬ ଥିବା ସ୍ଥଳେ ବର୍ତ୍ତମାନ ସେ ସବୁକୁ ବଢ଼ାଇ ଯଥାକ୍ରମେ ୨୨ ଓ ୬୩ କରାଯାଇଅଛି ।

## ପ୍ରୌଢ଼ଶିକ୍ଷା

ବର୍ତ୍ତମାନ ୧୫୦ ଟି ପ୍ରୌଢ଼ଶିକ୍ଷା କେନ୍ଦ୍ର କାର୍ଯ୍ୟକାରୀ ଅଛି । ୩୧୩୬ ଜଣ ନିରକ୍ଷର ବ୍ୟକ୍ତି ସାକ୍ଷର ହୋଇଅଛନ୍ତି । ପ୍ରତି ପ୍ରୌଢ଼ଶିକ୍ଷା କେନ୍ଦ୍ରରେ ଗୋଟିଏ ଲେଖାଏଁ ଗ୍ରେଟ ଲାଇବ୍ରେରୀ ରହିଛି । ଅସ୍ପୃଶ୍ୟତା ନିବାରଣ ପାଇଁ ନାଟକ ଆକାରରେ ଗୋଟାଏ ପାଲା ଲେଖାଯାଇ ବିଭିନ୍ନ ସ୍ଥାନରେ ଅଭିନୟ କରାଯାଉଛି । ଅସ୍ପୃଶ୍ୟତା ନିବାରଣ ପାଇଁ କେତୋଟି ଗ୍ରାମୋଫୋନ ରେକର୍ଡ଼ ମଧ୍ୟ ତିଆରି କରାଯାଇଅଛି ।

# ସମବାୟ

୧୯୫୩ ଜୁନ ୩୦ ତାରିଖରେ ସରିଥିବା ସମବାୟ ବର୍ଷରେ ଓଡ଼ିଶାରେ ବିଭିନ୍ନ ଶ୍ରେଣୀର ୬୦୨୨ଟି ସମବାୟ ଅନୁଷ୍ଠାନ ଥିଲା । ଇତିମଧ୍ୟରେ ୧୯୫୪ ମାର୍ଚ୍ଚ ୩୧ ତାରିଖ ସୁଦ୍ଧା ଅଧିକା ୩୩୪ଟି ରେଜିଷ୍ଟ୍ରିଭୁକ୍ତ ହୋଇଅଛି । ସମବାୟ ବର୍ଷ ମଧ୍ୟରେ ୬୩ଟି ସମବାୟ ସମିତି ଭାଙ୍ଗି ଯାଇଛି ।

## କୃଷିଋଣ ସମବାୟ ସମିତି

ଏ ସମିତିଗୁଡ଼ିକ ପ୍ରଧାନତଃ କୃଷି ପାଇଁ ଉଦ୍ଦିଷ୍ଟ ଓ କୃଷି ପାଇଁ ଋଣ ଦେବା ସେମାନଙ୍କର କାର୍ଯ୍ୟ । ସମଗ୍ର ସମିତି ମଧ୍ୟରୁ ୪,୮୫୦ଟି କୃଷି ଋଣ ସମିତି । କୃଷିକାର୍ଯ୍ୟ ଚଳାଇବା ନିମନ୍ତେ ଏ ସମିତିମାନେ

କୃଷକମାନଙ୍କୁ ଅଳ୍ପ ମିଆଦରେ ସୁବିଧାଜନକ ଋଣ ଯୋଗାଇଥାନ୍ତି ।

### ସମବାୟ ଷ୍ଟୋର ପ୍ରଭୃତି

୮୪୯ଟି ସମିତି—ବାଣିଜ୍ୟ ଦ୍ରବ୍ୟ କ୍ରୟ ବିକ୍ରି ଷ୍ଟୋର, କୁଟୀରଶିଳ୍ପ ସମବାୟ ସମିତି, ବହୁମୁଖୀ ସମବାୟ ସମିତି ଓ ଜଳସେଚନ ସମବାୟ ସମିତି । ୨୦୬ଟି ସମବାୟ ସମିତି ଷ୍ଟେଟ ସ୍ତରରେ କୃଷକଙ୍କୁ ଓ ଶିଳ୍ପୀଙ୍କୁ ଋଣ ଦିଅନ୍ତି । ୨୯ଟି ସମବାୟ ସମିତି କୃଷିଜାତ ପଦାର୍ଥ ବିକ୍ରି କରନ୍ତି ଏବଂ କୃଷକଙ୍କୁ କେବଳ ଋଣ ଦିଅନ୍ତି ନାହିଁ ।

### କେନ୍ଦ୍ର ସମବାୟ ବ୍ୟାଙ୍କ

ଓଡ଼ିଶାରେ ୨୩ଟି କେନ୍ଦ୍ର ସମବାୟ ବ୍ୟାଙ୍କ ଅଛି । ଏମାନେ ଯେଉଁସବୁ ଅଞ୍ଚଳରେ ଅବସ୍ଥିତ, ଭିତରେ ଥିବା ସମବାୟ ସମିତିମାନେ ଏମାନଙ୍କ ଧନ୍ଦ୍ରକ ଆଫିଲିଏଟେଡ୍; କାରଣ ସେମାନେ ଏ ସବୁରୁ ଆର୍ଥିକ ସାହାଯ୍ୟ ଋଣସୂତ୍ରରେ ପାଇଥାନ୍ତି ।

### ଷ୍ଟେଟ୍ ସମବାୟ ବ୍ୟାଙ୍କ

ଏ ସବୁ କେନ୍ଦ୍ର ସମବାୟ ବ୍ୟାଙ୍କର ଶୀର୍ଷ ସ୍ଥାନରେ କଟକରେ ଅବସ୍ଥିତ ଷ୍ଟେଟ୍ ସମବାୟ ବ୍ୟାଙ୍କ ରହିଅଛି । ଏହା ସମବାୟ ଆନ୍ଦୋଳନରୁ ଧନ ଓ ରାଜ୍ୟ ସରକାରଙ୍କଠାରୁ ଋଣ ରୂପେ ଧନ ପାଏ ଏବଂ ରିଜର୍ଭ ବ୍ୟାଙ୍କ ଅଫ୍ ଇଣ୍ଡିଆଙ୍କ କୃଷିଋଣ ବିଭାଗରୁ ମଧ୍ୟ ଧନ ପାଇ ରାଜ୍ୟରେ ସ୍ଥାପିତ ସମବାୟ ସମିତିମାନଙ୍କୁ ଋଣ ଦେବାର ସୁବିଧା ପାଏ ।

### ଲ୍ୟାଣ୍ଡ୍ ମର୍ଟଗେଜ୍ ବ୍ୟାଙ୍କ

କୃଷିର ଉନ୍ନୟନ କରିବା ପାଇଁ ଓ ବେଶୀ ସୁଧ ନେଇଥିବା ମହାଜନମାନଙ୍କ ଋଣ ସୁଝି ଦେବାପାଇଁ ଜମି ବନ୍ଧକ ରଖି କରଜ ଦେବାକୁ ଓଡ଼ିଶାରେ ଗୋଟିଏ ଲ୍ୟାଣ୍ଡ୍ ମର୍ଟଗେଜ୍ ବ୍ୟାଙ୍କ ଅଛି ।

### କୃଷୀଙ୍କ ମଧ୍ୟରେ ସମବାୟର ଅଗ୍ରଗତି

କୃଷୀମାନଙ୍କୁ ଋଣ ଦେବା ନିମନ୍ତେ ସମବାୟ ଆନ୍ଦୋଳନ ପ୍ରବର୍ତ୍ତିତ ହୋଇଥିଲା । ତଳେ ଦିଆଯାଇଥିବା ହିସାବରେ ଏ ଆନ୍ଦୋଳନର ଅଗ୍ରଗତି ଅନୁମାନ କରାଯାଇ ପାରିବ ।

| ବର୍ଷ | | ଦିଆଯାଇଥିବା ଋଣ |
|---|---|---|
| ୧୯୪୯-୫୦ | ... | ୪୦.୬୮ ଲକ୍ଷ |
| ୧୯୫୦-୫୧ | ... | ୪୮.୦୭ ଲକ୍ଷ |
| ୧୯୫୧-୫୨ | ... | ୫୦.୨୭ ଲକ୍ଷ |
| ୧୯୫୨-୫୩ | ... | ୫୮.୫୨ ଲକ୍ଷ |

ଏଥିର ସୁଧ ହାର ଶତକଡ଼ା ଟ ୮ ରୁ ଅଧିକ ହୋଇ ନ ପାରେ ।

### କୃଷି-ଇତର ସମବାୟ ସମିତି

କୃଷି-ଇତର ଉଦ୍ଦେଶ୍ୟରେ ଗଢ଼ା ଯାଇଥିବା ସମବାୟ ସମିତିମାନେ ସଭ୍ୟମାନଙ୍କୁ ୨୧.୨୩ ଲକ୍ଷ ଟଙ୍କା ଋଣ ଦେଇଥିଲେ । ୧୯୫୩ ଜୁନ ୩୦ ତାରିଖରେ ସରିଥିବା ବର୍ଷରେ ସେମାନେ ନିଟ୍ ଲାଭ ଟ ୧,୨୮,୨୭୦୯ ପାଇ ଅଛନ୍ତି ।

ସମବାୟ ଆନ୍ଦୋଳନ କୃଷି ଉତ୍ପାଦନ, କୁଟୀର ଶିଳ୍ପ, ବଣିଜ୍ୟ, ଗ୍ରାମମଙ୍ଗଳ କାର୍ଯ୍ୟ ଓ ବହୁମୁଖୀ କାର୍ଯ୍ୟରେ ସାହାଯ୍ୟ କରିଥାଏ ।

କୃଷି ଉତ୍ପାଦନରେ ସାହାଯ୍ୟ କରିବା ନିମନ୍ତେ ୫୦ଟି ସମବାୟ ସମିତି ରହିଅଛି । ଏ ସବୁର ସଭ୍ୟସଂଖ୍ୟା ୨,୧୭୪ ଓ ମୂଳଧନ ୨୪୦,୫୨୯୧ । କୋଠଘର, ସମବାୟ ସମିତି, ଆଖୁ, ଆଳୁ, ତମାଖୁଚାଷ, ଧୂଆଁପତ୍ର, ଗୋଟ ଉତ୍ପାଦକ ସମବାୟ ସମିତିମାନ ଏ ଶ୍ରେଣୀର ସମବାୟ ସମିତି ଅଟନ୍ତି ।

### କୁଟୀରଶିଳ୍ପ ଓ ସମବାୟ

କୁଟୀରଶିଳ୍ପର ଉନ୍ନୟନ ପାଇଁ ୧୯୫୩ ଜୁନ ୩୦ ତାରିଖ ସୁଦ୍ଧା ୪୩୦ ଟି ସମବାୟ ସମିତି ଥିଲା । ପୂର୍ବବର୍ତ୍ତୀ ବର୍ଷ ୪୦୨ଟି ଥିଲା । ସେମାନଙ୍କ ମୂଳଧନ



ଉତ୍କଳ ବିଶ୍ୱବିଦ୍ୟାଳୟର ଦଶମ ସମାବର୍ତ୍ତନ ଉତ୍ସବ



ଉତ୍କଳ ବିଶ୍ୱବିଦ୍ୟାଳୟ ସମାବର୍ତ୍ତନ ଉତ୍ସବରେ ଚାନ୍ସେଲରଙ୍କ
ଦ୍ୱାରା ଚାନ୍ସେଲର କପ୍ ଓ ନଗଦ ପୁରସ୍କାର ପ୍ରଦାନ



ରେଭେନ୍ସା କଲେଜ, କଟକ



କାପିଟାଲ ହାଇ ସ୍କୁଲ, ଭୁବନେଶ୍ୱର



ଅନୁଗୁଳ ନାରୀଶିକ୍ଷା ମନ୍ଦିରର ସମାବର୍ତ୍ତନ ଉତ୍ସବ



ସମାବର୍ତ୍ତନ ଉତ୍ସବର ଆଉ ଗୋଟିଏ ଦୃଶ୍ୟ

୧୧.୪୬ ଲକ୍ଷରୁ ବଢ଼ି ୧୨.୮୫ ଲକ୍ଷ ହୋଇଥିଲା । ସେମାନଙ୍କ ନିଟ୍ ଲାଭର ପରିମାଣ ଥିଲା ଟ୧,୨୨,୨୬୪ ।

କେତେକ ପ୍ରଧାନ ପ୍ରଧାନ କୁଟୀର ଶିଳ୍ପ ସମବାୟ ସମିତିର ନାମ—

୧ । ହାତ ତନ୍ତ ତନ୍ତୁବାୟ ଓ ସୂତା ବୁଣନ ସମବାୟ ସମିତି ।
୨ । ଟାଇଲ ଉତ୍ପାଦକ ସମବାୟ ସମିତି ।
୩ । ଉତ୍ପାଦନ ଓ ବିକ୍ରି ବଟା ସମବାୟ ସମିତି ।
୪ । କଂସାରି ସମବାୟ ସମିତି ।
୫ । ମୋଢ଼ା ସମବାୟ ସମିତି ।
୬ । ତୈଳିକ ସମବାୟ ସମିତି ।
୭ । ବେତ ପ୍ରସ୍ତୁତକାରକ ସମବାୟ ସମିତି ।
୮ । ଶିଙ୍ଗକାମ ଶିଳ୍ପୀ ସମବାୟ ସମିତି ।
୯ । ଶାମୁକା ସଂଗ୍ରାହକ ସମବାୟ ସମିତି ।
୧୦ । ବଦୂ୍ୟଲ୍ ଶିଳ୍ପୀ ସମବାୟ ସମିତି ।
୧୧ । ମହୁମାଛି ପାଳନ ସମବାୟ ସମିତି ।
୧୨ । ଢବଧ ଶିଳ୍ପୀ ସମବାୟ ସମିତି ।

## ବିକ୍ରି ବଟା ପାଇଁ ମାର୍କେଟିଙ୍ଗ ଅର୍ଗାନଜେସନ

କୃଷିଜାତ ଓ ଶିଳ୍ପଜାତ ପଦାର୍ଥମାନଙ୍କର ବିକ୍ରିବଟା ନିମନ୍ତେ ଗୋଟିଏ ପ୍ରାଦେଶିକ ସମବାୟ ମାର୍କେଟିଙ୍ଗ ସୋସାଇଟି ଅଛି ଏବଂ ତା ଅଧୀନରେ ଅନେକଗୁଡ଼ିଏ ମାର୍କେଟିଙ୍ଗ ସୋସାଇଟି ଓ ବହୁମୁଖୀ ସମବାୟ ସମିତି ଅଛି । ସମବାୟ ବର୍ଷ ଶେଷକୁ ଏପରି ୩୫୯ଟି ସମିତି ଥିଲା । ସେମାନଙ୍କ ମୂଳଧନ ୫୯.୨୫ ଲକ୍ଷ ଟଙ୍କା ଥିଲା । କୃଷିଜାତ ପଦାର୍ଥମାନଙ୍କର ବିକ୍ରିବଟା ପାଇଁ ଓଡ଼ିଶାରେ ୨୦ଟି କୃଷି ସମବାୟ ମାର୍କେଟିଙ୍ଗ ସମିତି ଅଛି । ସେମାନେ ୧୦.୩୪ ଲକ୍ଷ ଟଙ୍କାର ଜିନିଷ ବିକ୍ରି କରି ନିଟ୍ ଟ ୧,୮୦,୯୦୮ ଲାଭ କରିଥିଲେ ।

## ସାମାଜିକ ସେବାମୂଳକ ସମବାୟ ସମିତି

ଏ ଶ୍ରେଣୀର ୧୮ଟି ସମବାୟ ସମିତି ଅଛି । ଏମାନେ ଲୋକଙ୍କର ଗୃହ ନିର୍ମାଣ, ଗ୍ରାମମଙ୍ଗଳ, ସ୍ୱାସ୍ଥ୍ୟମଙ୍ଗଳ ଓ ଔଷଧ ପ୍ରସ୍ତୁତ କରିବା କାର୍ଯ୍ୟରେ ବ୍ୟାପୃତ । ଏମାନଙ୍କ ମୂଳଧନ ୧୦.୮୧ ଲକ୍ଷ ଟଙ୍କା । ଏଥିରୁ ଏମାନଙ୍କ କାର୍ଯ୍ୟର ପରିସର ଅନୁମାନ କରାଯାଇପାରେ ।

## ବହୁମୁଖୀ ସମବାୟ ସମିତି

ଏ ବର୍ଷ ୮୬ଟି ବହୁମୁଖୀ ସମବାୟ ସମିତି ଥିଲା ଏବଂ ସେ ଗୁଡ଼ିକରେ ୧୯,୬୫୧ ଜଣ ସଭ୍ୟ ଥିଲେ । ସେମାନଙ୍କର ମୂଳଧନ ଥିଲା ୧୮.୫୩ ଲକ୍ଷ ଟଙ୍କା ।

## ମତ୍ସ୍ୟଜୀବୀ ସମବାୟ ସମିତି

ଓଡ଼ିଶାରେ ଏ ଧରଣର ୩ଟି ଶ୍ରେଣୀର ସମବାୟ ସମିତି ରହିଛି; ଯଥା—(୧) ମଧୁର ମାଛ ବ୍ୟବସାୟ କରୁଥିବା ମତ୍ସ୍ୟଜୀବୀ ସମବାୟ ସମିତି, (୨) ସମୁଦ୍ରମାଛ ବ୍ୟବସାୟ କରୁଥିବା ମତ୍ସ୍ୟଜୀବୀ ସମବାୟ ସମିତି ଓ (୩) ଚିଲିକାମାଛ ବ୍ୟବସାୟ କରୁଥିବା ମତ୍ସ୍ୟଜୀବୀ ସମବାୟ ସମିତି ।

ପ୍ରଥମ ଶ୍ରେଣୀର ସମବାୟ ସମିତିମାନେ ପୋଖରୀମାନ ମରାମତି କରିବା ବା ନୂଆ ପୋଖରୀ ଖୋଳିବା ପାଇଁ ମାଲିକମାନଙ୍କୁ ଋଣ ଦିଅନ୍ତି ଏବଂ ଏହିଦ୍ୱାରା ମତ୍ସ୍ୟପାଳନ ଶିଳ୍ପର ସହାୟତା କରନ୍ତି । ଏ ଉଦ୍ଦେଶ୍ୟରେ ଟ ୧,୨୦୧ ଋଣ ଦିଆଯାଇଥିଲା ।

ସମୁଦ୍ରମାଛ ବ୍ୟବସାୟ କରୁଥିବା ମତ୍ସ୍ୟଜୀବୀ ସମବାୟ ସମିତି ମାନଙ୍କରେ ବର୍ତ୍ତମାନ ମୂଳଧନ ଟ ୫୦,୦୦୦ । ସମୁଦ୍ରରୁ ବର୍ଷର ଯେଉଁ ସମୟରେ ମାଛ ଧରିହୁଏ ନାହିଁ, ସେ ସମୟରେ ଏ ସମିତିମାନଙ୍କର ସଭ୍ୟମାନଙ୍କୁ ଋଣ ଦିଆଯାଏ ଏବଂ ଏମାନଙ୍କୁ ସୁଧଖୋର ମହାଜନମାନଙ୍କ କବଳରୁ ରକ୍ଷା କରାଯାଏ ।

ଚିଲିକାମାଛ ବ୍ୟବସାୟ କରୁଥିବା ମତ୍ସ୍ୟଜୀବୀମାନଙ୍କ ସମସ୍ୟା ଅପେକ୍ଷାକୃତ ଅଧିକ ଗୁରୁତ୍ୱପୂର୍ଣ୍ଣ । ଚିଲିକାରୁ ପ୍ରତିଦିନ ୨୫୦ ମହଣ ହିସାବରେ ମାଛ ଧରାଯାଏ ଏବଂ ଏଥିର ଅଧିକ ଭାଗ ରପ୍ତାନି ହୁଏ କଲିକତା ବଜାରକୁ । ବ୍ୟବସାୟୀ ମହାଜନମାନେ କେଉଟମାନଙ୍କୁ ଶୋଷଣ କରୁଥିଲେ । ମାଛଧରାରୁ କେଉଟମାନେ ଆପେ କୌଣସି ଉପକାର ନ ପାଇ ବର୍ଷକୁବର୍ଷ ଦରିଦ୍ରତର ହେଉଥିଲେ । ଏ ଦୁର୍ଦ୍ଦଶାରୁ ସେମାନଙ୍କୁ ରକ୍ଷା କରିବାପାଇଁ ସେମାନଙ୍କୁ ନେଇ ୨୧ଟି ସମବାୟ ସମିତି ଗଢ଼ାଯାଇଥିଲା । ସେଥିରୁ ୮ଟିକୁ ଛାଡ଼ି ଅନ୍ୟଗୁଡ଼ିକୁ ବନ୍ଦ କରିଦିଆଯାଇଛି । କେଉଟମାନେ ନିରକ୍ଷର ଥିବାରୁ ଓ ପରିଚାଳନା ଜାଣି ନ ଥିବାରୁ ସେମାନେ ସମବାୟ ସ୍ତରରେ କାର୍ଯ୍ୟ କରିବାକୁ ଅକ୍ଷମ ହୋଇ ପଡ଼ୁଅଛନ୍ତି । ତଥାପି ଏହି ୮ଟି ସମବାୟ ସମିତିରେ ସନ୍ତୋଷଜନକଭାବରେ କାର୍ଯ୍ୟ ଚାଲିଛି । ୧୯୫୧-୫୨ ରେ ଏ ସମିତିମାନେ ୮୦,୦୦୦ ମହଣ ମାଛ ରପ୍ତାନି କରିଥିଲେ । ସମଗ୍ର ଚିଲିକାମାଛ ବ୍ୟବସାୟର ଏହା ଏକ ତୃତୀୟାଂଶ । ଏଥିରୁ ସମିତିମାନେ ୧ ଲକ୍ଷ ଟଙ୍କା ନିଟ୍ ଲାଭ ପାଇଥିଲେ ।

ଓଡ଼ିଶାରେ ସମବାୟ ଆନ୍ଦୋଳନ ଦୃଢ଼ଭାବରେ ପ୍ରତିଷ୍ଠିତ ହେବାକୁ ଯାଉଅଛି । ଲୋକେ ଅଧିକରୁ ଅଧିକ ଏଥିର ଉପଯୋଗିତା ଉପଲବ୍ଧି କରୁଅଛନ୍ତି । କେବଳ ସଭ୍ୟସଂଖ୍ୟା ନ ବଢ଼ାଇ ଏଥିପ୍ରତି ଲୋକଙ୍କ ଆଗ୍ରହ ଉତ୍ସାହ ବଢ଼ାଇବା ଉପରେ ବେଶି ନଜର ଦିଆଯାଉଅଛି ।

---

## ଶିକ୍ଷା

### ଶିଳ୍ପଶିକ୍ଷା—

#### ଭାରତର ବୈଷୟିକ ଟ୍ରେନିଙ୍ଗ୍

ଓଡ଼ିଶାରେ ଇଲେକ୍‌ଟ୍ରିକାଲ (ବିଦ୍ୟୁତ୍), ମେକାନିକାଲ (କଳକାରଖାନା) ଓ କେମିକାଲ (ରସାୟନ) ଇଞ୍ଜିନିଅରିଙ୍ଗରେ ଉଚ୍ଚ ଶିକ୍ଷା ଦେବାକୁ ଓ ଟେକ୍‌ସ୍‌ଟାଇଲ୍ ଟେକ୍ନୋଲୋଜି (ବସ୍ତ୍ରବୟନ ବିଜ୍ଞାନ) ଲେଦର ଟେକ୍ନୋଲୋଜି (ଚମଡ଼ାଶିଳ୍ପ ବିଜ୍ଞାନ) ଓ ଜିଓଲୋଜି (ଭୂତତ୍ତ୍ୱ ବିଜ୍ଞାନ) ସମ୍ବନ୍ଧରେ ଶିକ୍ଷା ଦେବାକୁ ଇଞ୍ଜିନିଅରିଙ୍ଗ୍ ଶିକ୍ଷାନୁଷ୍ଠାନ ନାହିଁ । ତେଣୁ ଭାରତର ଅନ୍ୟାନ୍ୟ ସ୍ଥାନରେ ଓ ଭାରତ ବାହାରେ ଇଞ୍ଜିନିଅରିଙ୍ଗ୍ ଶିକ୍ଷାନୁଷ୍ଠାନମାନଙ୍କରେ ଓଡ଼ିଶା ଛାତ୍ରମାନଙ୍କ ଶିକ୍ଷା ପାଇଁ ସ୍ଥାନ କରି ଦିଆଯାଇଥିଲା । ଶିକ୍ଷାର ଉପଯୁକ୍ତ ବିଷୟମାନ ଠିକଣା କରି ଦିଆଯାଇଥିଲା ଓ ମେଧାବୀ ଛାତ୍ରମାନଙ୍କୁ ଉପଯୁକ୍ତ ପରିମାଣରେ ଷ୍ଟାଇପେଣ୍ଡ୍ ଦେଇ ପଠାଯାଇଥିଲା । ଗତ ଆଠବର୍ଷ ହେଲା ବାର୍ଷିକ ପଚିଶ ଜଣ କରି ଛାତ୍ର ନାନାବିଧ ବିଷୟରେ ଶିକ୍ଷା କରିବାକୁ ପଠା ହୋଇଅଛନ୍ତି ।

#### ଓଡ଼ିଶା ସ୍କୁଲ୍ ଅଫ୍ ଇଞ୍ଜିନିଅରିଙ୍ଗ୍

ମେକାନିକାଲ, ଇଲେକ୍‌ଟ୍ରିକାଲ ଓ ସିଭିଲ ଇଞ୍ଜିନିଅରିଙ୍ଗରେ ଡିପ୍ଲୋମା ପାଇଥିବା ଓଭରସିଅରମାନଙ୍କୁ ଏଥିରେ ଟ୍ରେନିଙ୍ଗ୍ ଦିଆଯାଏ । ପୂର୍ବେ ଏ ଅନୁଷ୍ଠାନରେ ୧୪୨ ଜଣ ଶିକ୍ଷାର୍ଥୀଙ୍କ ପଢ଼ିବା ପାଇଁ ବ୍ୟବସ୍ଥା ଥିଲା । ଏବେ ୨୭୦ ଜଣ ଶିକ୍ଷାର୍ଥୀଙ୍କୁ ଗ୍ରହଣ କରିବାର ବ୍ୟବସ୍ଥା ହୋଇଅଛି । ଏ ଅନୁଷ୍ଠାନରେ ବର୍ଷକୁ ହାରାହାରି ପ୍ରାୟ ୨ଲକ୍ଷ ଟଙ୍କା ଖର୍ଚ୍ଚ ହୁଏ । ପ୍ରୋଫେସନାଲ (ବ୍ୟବସାୟ) ଟ୍ରେନିଙ୍ଗ୍ ପାଇଁ ଏହା ଗୋଟିଏ ନିଖିଳ ଭାରତ କେନ୍ଦ୍ର । ଏଥିରେ ବର୍ଷକୁ ହାରାହାରି ସମଗ୍ର ଭାରତରୁ ୧୫୦ ଜଣ ଛାତ୍ର ଶିକ୍ଷା ପାଆନ୍ତି ।

## ଶିଳ୍ପ ବିଦ୍ୟାଳୟ ( Industrial School )

୧୯୪୬-୪୭ରେ ଓଡ଼ିଶାରେ ୨ଟି ମାତ୍ର ଶିଳ୍ପ ବିଦ୍ୟାଳୟ ଥିବା ସ୍ଥଳେ ବର୍ତ୍ତମାନ ତାହାର ସଂଖ୍ୟା ବଢ଼ି ୧୨ଟି ହୋଇଅଛି । ଏ ସବୁ ବିଦ୍ୟାଳୟରେ ବଢ଼େଇ କାମ, କମାର କାମ, ଲୁଗାବୁଣା, ବେତବୁଣା ଓ ଜୋତା ତିଆରି ପ୍ରଭୃତି ଶିକ୍ଷା ଦିଆଯାଏ । ବର୍ଷକୁ ଏ ବିଦ୍ୟାଳୟମାନଙ୍କରୁ ହାରାହାରି ୨୦୦ ହିସାବରେ ଶିକ୍ଷାର୍ଥୀ ଉତ୍ତୀର୍ଣ୍ଣ ହୁଅନ୍ତି । ଏ ସବୁ ବିଦ୍ୟାଳୟରେ ବାର୍ଷିକ ଟ୨,୩୦,୦୦୦୲ ଖର୍ଚ୍ଚ ହୁଏ ।

## କୁଟୀର ଶିଳ୍ପ ବିଦ୍ୟାଳୟ ( Craft School )

୧୯୪୬-୪୭ ରେ ୪ଟି ମାତ୍ର କୁଟୀର ଶିଳ୍ପ ବିଦ୍ୟାଳୟ ଥିଲା । ବର୍ତ୍ତମାନ ତାହାର ସଂଖ୍ୟା ବଢ଼ି ୧୦ ହୋଇଅଛି । ଏ ସବୁରେ ସତରଞ୍ଜି ବୁଣା, ବେତବୁଣା, କଣ୍ଢେଇ ତିଆରି, କାଇଁଚ କାମ, ଖାଦୁଆ ତିଆରି ପ୍ରଭୃତି ଶିକ୍ଷା ଦିଆଯାଏ । ଏ ସବୁ ବିଦ୍ୟାଳୟରେ ହାରାହାରି ୪୦୦ ଜଣ ଶିକ୍ଷାର୍ଥୀ ବ୍ୟବସାୟ ଉଦ୍ଦେଶ୍ୟରେ ଜିନିଷପତ୍ର ତିଆରି କରନ୍ତି ଓ ଶିଳ୍ପ ବିଭାଗଦ୍ୱାରା ସେ ସବୁ ବିକ୍ରି କରାଯାଏ ।

## ଶିକ୍ଷାନୁଷ୍ଠାନମାନଙ୍କୁ ସାହାଯ୍ୟ

୧୯୪୬-୪୭ରେ ଟ୍ରେନିଙ୍ଗ୍ ଅନୁଷ୍ଠାନମାନଙ୍କୁ ସାହାଯ୍ୟ ସୂତ୍ରରେ ଟ୧୧,୦୦୦୲ ଦିଆଯାଇଥିଲା; କିନ୍ତୁ ସାହାଯ୍ୟର ପରିମାଣ ବର୍ତ୍ତମାନ ବାର୍ଷିକ ଟ୨୦,୦୦୦୲ ହୋଇଅଛି । ସାହାଯ୍ୟ ପାଉଥିବା ଅନୁଷ୍ଠାନମାନ ବେସରକାରୀ । ସେମାନେ ବିଭିନ୍ନ କୁଟୀର ଶିଳ୍ପ ବିଷୟରେ ଟ୍ରେନିଙ୍ଗ୍ ଦିଅନ୍ତି ।

## ବୃହତ୍ ଶିଳ୍ପ

ବୃହତ୍ ଶିଳ୍ପମାନଙ୍କୁ ବେସରକାରୀ ଲୋକଙ୍କ ଦ୍ୱାରା ଚାଳିତ କରାଇବା ସରକାରଙ୍କ ମତ । ତେଣୁ ଶିଳ୍ପପତିମାନଙ୍କୁ ନିଜ ମୂଳଧନ ଖଟାଇ ଶିଳ୍ପାନୁଷ୍ଠାନମାନ ସ୍ଥାପନ କରିବାକୁ ଉତ୍ସାହିତ କରାଯାଇଅଛି । ସରକାର ଋଣ ରୂପେ, କିଣିଥିବା ସେୟାର ରୂପେ ବା ବ୍ୟାଙ୍କମାନଙ୍କୁ କ୍ୟାଶ୍ କ୍ରେଡିଟ୍ ଗ୍ୟାରେଣ୍ଟି ରୂପେ ମୂଳଧନ ଆଂଶିକ ଯୋଗାଇ ଥାନ୍ତି । ପ୍ରତି ବର୍ଷକୁ ୧୫ ଲକ୍ଷ ଟଙ୍କା ହିସାବରେ ସରକାର ଟଙ୍କା ଖଟାଇ ଥାନ୍ତି । ୧୯୪୬-୪୭ ରେ ସରକାର ଖଟାଇ ଥିବା ଟଙ୍କାର ପରିମାଣ ମୋଟେ ଟ୧,୦୦୦୲ ଥିବାସ୍ଥଳେ ତାହା ବର୍ତ୍ତମାନ ୨ କୋଟିରେ ପହଞ୍ଚିଛି ଓ ନିମ୍ନଲିଖିତ ବୃହତ ଶିଳ୍ପ ପ୍ରତିଷ୍ଠିତ ହୋଇଅଛି ।

(୧) ଲୁଗାକଳ ... ... ୧
(୨) ସିମେଣ୍ଟ କାରଖାନା ... ୧
(୩) ରୋଲିଙ୍ଗ ମିଲ୍ ... ... ୧
(୪) ରିଫ୍ରିଜରେଟର କାରଖାନା ... ୧
(୫) କାଚକାରଖାନା ... ... ୧

ଏହି ଅନେକ ଗୁଡ଼ିଏ ମଧ୍ୟମ ଓ କ୍ଷୁଦ୍ର ଶିଳ୍ପ ମଧ୍ୟ ସଂସ୍ଥାପିତ ହୋଇଅଛି । କେତେକ ଗଡ଼ଜାତରେ ରାଜାମାନଙ୍କ ଦ୍ୱାରା ପରିଚାଳିତ ଗୁଡ଼ିଏ ଶିଳ୍ପାନୁଷ୍ଠାନ ବନ୍ଦ ହୋଇଯାଇଥିଲା । ସରକାରଙ୍କ ଆର୍ଥିକ ସାହାଯ୍ୟରେ ସେ ସବୁ ପୁଣି ଖୋଲିଅଛି । କେତେକକୁ ଖୋଲିବା ପାଇଁ ବ୍ୟବସ୍ଥା କରାଯାଉଅଛି ।

ଇତିମଧ୍ୟରେ ନିମ୍ନଲିଖିତ ନୂତନ ଶିଳ୍ପର ପ୍ରତିଷ୍ଠା ପାଇଁ ସମସ୍ତ ପ୍ରକାର ପ୍ରାରମ୍ଭିକ ଆୟୋଜନ କରାଯାଇଅଛି ।

(୧) ପାଇପ ଓ ଟ୍ୟୁବ (ନଳ) ତିଆରି ପାଇଁ କଳିଙ୍ଗ ଟ୍ୟୁବ୍ କାରଖାନା ସଂସ୍ଥାପନ ।

(୨) କଲିକତାର ଟିଟାଗଡ଼ କାଗଜ ମିଲଙ୍କ ହେଲ୍‌ଜେମ କୋମ୍ପାନୀଙ୍କ ଦ୍ୱାରା ଚୌଦ୍ୱାରରେ କାଗଜ-କଳ ସଂସ୍ଥାପନ ।

(୩) ସମ୍ବଲପୁରରେ ଅଲୁମିନିଅମ କାରଖାନା ସଂସ୍ଥାପନ ।

(୪) ଫେରୋମାଙ୍ଗାନିଜ କାରଖାନା ସଂସ୍ଥାପନ । ଜୟପୁର ମାଇନିଙ୍ଗ ସିଣ୍ଡିକେଟ ରାୟଗଡ଼ାଠାରେ ଫେରୋମାଙ୍ଗାନିଜ କାରଖାନା ସଂସ୍ଥାପନ କରିବାକୁ

ଲାଇସେନସ ପାଇ ଅଛନ୍ତି । ଟାଟା କମ୍ପାନୀ ମଧ୍ୟ କୋଡ଼ାଇସୁଠାରେ ଅନ୍ୟ ଗୋଟିଏ ଫେରୋ-ମାଙ୍ଗାନିଜ କାରଖାନା ଖୋଲିବାକୁ ରାଜ୍ୟସରକାରଙ୍କ ସହିତ ଚୁକ୍ତିପତ୍ର ତଳାଇ ଅଛନ୍ତି ।

# କୁଟୀର ଶିଳ୍ପ

## କୁଟୀର ଶିଳ୍ପ ବୋର୍ଡ଼

୧୯୫୩ ମସିହାରେ ଓଡ଼ିଶା ପାଇଁ ଗୋଟିଏ କୁଟୀର ଶିଳ୍ପ ବୋର୍ଡ଼ ଗଢ଼ାଯାଇଥିଲା । ଏଥିରେ ମୁଖ୍ୟମନ୍ତ୍ରୀ ସଭାପତି ଓ ଶିଳ୍ପମନ୍ତ୍ରୀ ଉପସଭାପତି ଅଛନ୍ତି । କେତେଗୁଡ଼ିଏ କୁଟୀର ଶିଳ୍ପ ଯୋଜନାକୁ ଉନ୍ନୟନ କରିବା ଓ କାର୍ଯ୍ୟରେ ପରିଣତ କରିବା ବିଷୟରେ ଏ ବୋର୍ଡ଼ ସରକାରଙ୍କୁ ପରାମର୍ଶ ଦିଅନ୍ତି ଏବଂ ଭାରତ ସରକାରଙ୍କ ଦ୍ୱାରା ସଂସ୍ଥାପିତ ୬ଟି ବୋର୍ଡ଼ ସହିତ ସମ୍ପର୍କ ରଖନ୍ତି । ସରକାରୀ ଓ ବେସରକାରୀ ସଦସ୍ୟଙ୍କୁ ମିଶାଇ ଏ ବୋର୍ଡ଼ରେ ୧୮ ଜଣ ସଦସ୍ୟ ଅଛନ୍ତି । ହାତତନ୍ତ, ଖଦି ଓ ତାଳଗୁଡ଼ ପ୍ରଭୃତି ବିଭିନ୍ନ ପ୍ରକାର କୁଟୀର ଶିଳ୍ପ ସଂସ୍ଥାର ସମସ୍ୟାମାନଙ୍କର ସମାଧାନ ନିମନ୍ତେ ଏ ବୋର୍ଡ଼ କେତେକ ସବ୍‌କମିଟୀମାନ ସ୍ଥାପନ କରିଅଛନ୍ତି ।

## ଗ୍ରାମ୍ୟ ତୈଳବୀଜ ଯୋଜନା

୧୯୫୦-୫୧ ଠାରୁ ରାଜ୍ୟସରକାର ତୈଳକ ସମବାୟ ସମିତିମାନଙ୍କୁ ଫସଲ ଅମଳ ସମୟରେ ତୈଳବୀଜ କିଣି ସାଇତି ରଖିବାପାଇଁ ବର୍ଷକୁ ବିନା ସୁଧରେ ଦୋ ଲକ୍ଷ ଲେଖାଏଁ ଟଙ୍କା କରଜ ଦେଉଅଛନ୍ତି । ୧୯୫୨-୫୩ଠାରୁ ଖଦିଗ୍ରାମ୍ୟ କେନ୍ଦ୍ର ତୈଳକ କମିଟି କେନ୍ଦ୍ର ବ୍ୟାଙ୍କକୁ ଦିଆଯାଉଥିବା ସୁଧ ବାବଦରେ ବାର୍ଷିକ ଟ ୪୨,୦୦୦ ଦେଉଛନ୍ତି ଏବଂ ରାଜ୍ୟ ସରକାର ମୂଲ୍ୟ ହ୍ରାସବୃଦ୍ଧିଜନିତ କ୍ଷତିର ପୂରଣ ପାଇଁ ମହଜଙ୍କୁ ଟ ୧ ଲେଖାଏଁ ତୈଳକ ସମିତିମାନଙ୍କୁ ଦେଉଅଛନ୍ତି । ଏ ବାବଦରେ ୧୯୫୧-୫୨ରେ ଟ ୩୦୦୦୦ ଓ ୧୯୫୨-୫୩ରେ ଟ ୪୮,୭୦୮ ଖର୍ଚ୍ଚ ଯାଇଅଛି । ଖଦିଗ୍ରାମ୍ୟ କେନ୍ଦ୍ର ତୈଳକ କମିଟି ଏହାର ୫୦ % ବହନ୍ତି ।

## ହାତତନ୍ତ ଶିଳ୍ପ

ଓଡ଼ିଶାରେ ୧,୨୦,୦୦୦ ହାତତନ୍ତ ଅଛି । କିନ୍ତୁ ଉଦ୍ଭାବ ତନ୍ତୀମାନେ ଜୀବିକାର୍ଜନ ପାଇଁ ଯଥେଷ୍ଟ ରୋଜଗାର କରି ପାରନ୍ତି ନାହିଁ । ୧୯୪୭-୪୮ରେ ୪ ଟି ତନ୍ତବୁଣା ପ୍ରଦର୍ଶନ ଦଳ ଗଢ଼ାଯାଇଥିଲା ଓ ୧୯୪୯-୫୦ରେ ଆଉ ୩ଟି ଗଢ଼ାଗଲା । ସେମାନଙ୍କ ଉଦ୍ୟମରେ ୨୦୦ ତନ୍ତର ଉନ୍ନତି ଘଟିଛି ଏବଂ ତନ୍ତୀମାନଙ୍କୁ ବର୍ଷକୁ ବର୍ଷ ୧୫୦ଟି ଡିଜାଇନ ଯୋଗାଇ ଦିଆଯାଉଛି । ତନ୍ତୀମାନଙ୍କ ବୁଣା ଲୁଗାପଟାର ବିକ୍ରି ପାଇଁ ଗୋଟିଏ ଟେକ୍ସଟାଇଲ ମାର୍କେଟିଂ ଅର୍ଗାନାଇଜେସନ ସ୍ଥାପନ କରାଯାଇଛି । ୧୯୪୭-୪୮ରେ ଏହା ୪ ଲକ୍ଷ ଟଙ୍କାର ଲୁଗାପଟା ବିକ୍ରି କରିଥିଲା । ବର୍ତ୍ତମାନ ବର୍ଷକୁ ୭ଲକ୍ଷ ଟଙ୍କାର ଲୁଗାପଟା ବିକ୍ରି କରୁଛି । ୧୯୫୩-୫୪ ଠାରୁ ହାତତନ୍ତ ବୋର୍ଡ଼ର ପ୍ରେରଣାରେ ହାତତନ୍ତ ଶିଳ୍ପର ପ୍ରଭୂତ ଉନ୍ନତି ଘଟିଅଛି । ଏହା ଅଧୀନରେ ବର୍ତ୍ତମାନ ୫୦ଟି ସମବାୟ ସମିତି କାର୍ଯ୍ୟ କରୁଅଛନ୍ତି । ସେମାନେ ଉନ୍ନତ ଧରଣର ଲୁଗାପଟା ପ୍ରସ୍ତୁତ କରନ୍ତି । ତନ୍ତମାନଙ୍କର ଉନ୍ନତି ପାଇଁ ୧୩ ଟି ପ୍ରଦର୍ଶନୀ ଦଳ ସ୍ଥାପନ କରାଯାଇଅଛି । ଅଧିକନ୍ତୁ [illegible] ଗୋଟିଏ ଲୁଗା ସୂତା ରଙ୍ଗକାରଖାନା ୧୯୫୦-୫୧ ମସିହାଠାରୁ କେନ୍ଦ୍ର ସରକାରଙ୍କ ଆନୁକୂଲ୍ୟରେ ସ୍ଥାପିତ ହୋଇଅଛି । ହାତତନ୍ତ ବୋର୍ଡ଼ ଯୋଜନା ଅନୁଯାୟୀ ରଙ୍ଗ କାରଖାନା ଓ ନମୁନା କାରଖାନା ସ୍ଥାପନ







ଉନ୍ନୟନପଥେ ଓଡ଼ିଶା

କୁଟୀର ଶିଳ୍ପ







ହକ୍ରୁବ'—ମାଟି ଉଠାଇବା ଯନ୍ତ୍ର

ଏକାବେ ରେଲ ସଡ଼କ ପୋଲ

ବାଁ ଘଟ ବସତ

15th Aug 1954

ଓଡ଼ିଶା ଟେକ୍ସଟାଇଲ ମିଲ୍‌ରେ ଶ୍ରୀଯୁକ୍ତ କେ. ସି. ରେଡ୍ଡୀ



ଉନ୍ନୟନପଥେ ଓଡ଼ିଶା

ଟେକ୍ସଟାଇଲ ଅର୍ଗାନାଇଜେସନରେ ଭାରତର ଅର୍ଥମନ୍ତ୍ରୀ ଶ୍ରୀ ଚିନ୍ତାମନ୍ ଦେଶମୁଖ ଓ ଶ୍ରୀମତୀ ଦୁର୍ଗାବାଈ ଦେଶମୁଖ



ଆଧୁନାତନ ପ୍ରସ୍ତରଶିଳ୍ପର ନମୁନା:
କେନ୍ଦୁଝରର ପ୍ରସ୍ତରଖୋଦିତ କମନୀୟ କାରୁକାର୍ଯ୍ୟ



ଓଡ଼ିଶୀ ବୟନ ଶିଳ୍ପର ଉତ୍କର୍ଷ:
ଶାଢ଼ୀର କଳାମଣ୍ଡିତ ମୁହଁ



ଉତ୍ପାଦନ ପାଇଁ ଗବେଷଣା ଏବଂ ହାତତନ୍ତ ଉନ୍ନୟନ ପାଇଁ ଅନ୍ୟାନ୍ୟ ବିବିଧ କାର୍ଯ୍ୟ କରାଯିବ ।

### ଏଣ୍ଡି ଶିଳ୍ପ

ଶିଳ୍ପଶିକ୍ଷା ଦେଉଥିବା ବ୍ୟକ୍ତିମାନଙ୍କ ଉଦ୍ୟମ ଫଳରେ ବର୍ଷକୁ ବର୍ତ୍ତମାନ ହାରାହାରି ୩୦ ମହଣ ଏଣ୍ଡିପୋକ ଓ ୨୦ ମହଣ ଏଣ୍ଡିସୂତା ଉତ୍ପାଦନ ହେଉଅଛି । ପ୍ରାୟ ୧୧୦ ଏଣ୍ଡିସୂତାକଟାଳି ତାଲିମ ହୋଇ ଅଛନ୍ତି । ଏମାନଙ୍କ ସୂତା ଶିଳ୍ପ ବିଭାଗଦ୍ୱାରା ବିକ୍ରୀ କରାଯାଉଅଛି । ଏଣ୍ଡିଶିଳ୍ପରେ ନିଯୁକ୍ତଥିବା କୃଷୀମାନଙ୍କର ଏଣ୍ଡିଶିଳ୍ପରୁ ଅତିରିକ୍ତ ଆୟ ହେଉଛି ।

### ସୂତାକଟା ଓ ଲୁଗାବୁଣା

୧୯୪୭-୪୮ ରୁ ସୂତାକଟାଳିଙ୍କୁ ସୂତାକଟାରେ ତାଲିମ ଦେବା କାମ ଆରମ୍ଭ କରାଯାଇଥିଲା । ସୂତାକଟାଳୀ ଓ ଲୁଗାବୁଣାଳୀଙ୍କୁ ତାଲିମ ଦେବାରେ ସେହି ସମୟଠାରୁ ହାରାହାରି ବର୍ଷକୁ ୧.୫ ଲକ୍ଷ ଟଙ୍କା ଖର୍ଚ୍ଚ ହେଉଛି । ଶିଳ୍ପ ବିଭାଗ ଅଧୀନରେ ହାରାହାରି ୫୦୯୦ ଓ ସୂତାକଟାଳୀ ସମବାୟ ସମିତିମାନଙ୍କ ଅଧୀନରେ ହାରାହାରି ୫୦୦୦ ସୂତାକଟାଳୀ କାମ କରୁଅଛନ୍ତି । ଶିଳ୍ପବିଭାଗ ଡିପୁମାନଙ୍କରେ ବର୍ଷକୁ ୪୦୦ ମହଣ ଓ ସୂତାକଟାଳୀ ସମବାୟ ସମିତିମାନଙ୍କ ଅଧୀନରେ ୯୦ ମହଣ ଖଦି ଉତ୍ପନ୍ନ ହେଉଛି । ସୂତା ଯଥାକ୍ରମେ ୪୦୦ ମହଣ ଓ ୧୫୦ ମହଣ ଉତ୍ପନ୍ନ ହେଉଛି ।

### ଚମଡ଼ା

୧୯୪୬-୪୭ ରେ ରାଜ୍ୟରେ ଚମଡ଼ାକଷା କାରଖାନା ବା ଟାନେରୀ ଆଦୌ ନ ଥିଲା । ବର୍ତ୍ତମାନ ୨ଟି ଟାନେରୀ, ଗୋଟିଏ ପ୍ରଦର୍ଶନୀ ଜୋତା କାରଖାନା ଓ ଅନେକଗୁଡ଼ିଏ ଚମଡ଼ା ସଂଗ୍ରହ କେନ୍ଦ୍ର ରହିଅଛି । ଗୋଟିଏ ଟାନେରୀରେ ଆଧୁନିକ ଶରପାଟୀର ଆବଶ୍ୟକ ଯନ୍ତ୍ରପାତି ରହିଛି । ଚମଡ଼ା ସଂଗ୍ରହ କେନ୍ଦ୍ରରେ ଚମଡ଼ା ଛଲିବାର ଉତ୍କୃଷ୍ଟ ଉପାୟ ପ୍ରଦର୍ଶିତ ହୁଏ । ବର୍ଷକୁ ହାରାହାରି ୨୫,୦୦୦ ଖଣ୍ଡ ଚମଡ଼ା ସଂଗ୍ରହ ହୋଇଥାଏ । ଅନେକଗୁଡ଼ିଏ କେନ୍ଦ୍ରରେ ହାଡ଼ ସଂଗ୍ରହ କରାଯାଉଛି । ଚମଡ଼ା ଛଲିବା ଲୋକେ ଯେପରି ସେମାନଙ୍କ ଘର ନିକଟରେ ବୋନ୍‌ମିଲ୍ ପାଇ ପାରନ୍ତି, ସେଥିପାଇଁ ବୋନମିଲ ତିଆରି କେନ୍ଦ୍ରମାନ କୁଟୀରଶିଳ୍ପ ଆକାରରେ ଗଢ଼ି ଦିଆଯାଉଛି । ବର୍ଷକେ ବଜାରକୁ ହାରାହାରି ଟ ୫୦,୦୦୦ର ଚମଡ଼ାକାମ ଯୋଗାଇ ଦିଆଯାଉଛି । "କରଞ୍ଜା" ପଟ ( ଛେଲି ) ସମ୍ପର୍କରେ ଓଡ଼ିଶା ବୋର୍ଡ୍ ଅଫ୍ ଇଣ୍ଡଷ୍ଟ୍ରିଜ୍ ଓ ସାଏଣ୍ଟିଫିକ୍ ରିସର୍ଚ୍ଚଙ୍କ ସ୍ୱତନ୍ତ୍ର ସାହାଯ୍ୟରେ ଯେଉଁ ଗବେଷଣା ହୋଇଥିଲା ତହିଁର ଫଳ ଭବିଷ୍ୟତକୁ ବହୁତ କାମ ଦେବ ବୋଲି ଆଶା କରାଯାଉଛି । ସମବାୟ ସମିତି ମାନଙ୍କ ଜରିଆରେ ଅନେକଗୁଡ଼ିଏ ଉନ୍ନତ ଧରଣର ଚମଡ଼ା ଛଲିବା କେନ୍ଦ୍ର ସ୍ଥାପିତ ହୋଇଅଛି ।

### ତାଳଗୁଡ଼ ଶିଳ୍ପର ଉନ୍ନୟନ

୧୯୪୯-୧୯୫୦ରୁ କେତେକ ତାଲିମ କେନ୍ଦ୍ର ସ୍ଥାପିତ ହୋଇଅଛି ଏବଂ ତହିଁରେ ଗୁଡ଼ିଏ କର୍ମୀ ତାଳଗୁଡ଼ ପ୍ରସ୍ତୁତ କରୁଛନ୍ତି । ବର୍ଷକୁ ହାରାହାରି ୪୨୦ ମହଣ ତାଳଗୁଡ଼ ଉତ୍ପାଦିତ ହେଉଛି ।

### ମହୁମାଛି ପାଳନ

ନିଖିଳ ଭାରତ ଖଦି ଓ ଗ୍ରାମଶିଳ୍ପ ବୋର୍ଡ଼, କଟକଙ୍କ ନିୟନ୍ତ୍ରଣରେ ମହୁମାଛି ପାଳନର ଗୋଟିଏ ଟ୍ରେନିଂ କେନ୍ଦ୍ର ଖୋଲାହୋଇଛି ଏବଂ ମଫସଲ ମାନଙ୍କରେ ତା ଅଧୀନରେ ୫ଟି କେନ୍ଦ୍ର ସ୍ଥାପିତ ହୋଇଅଛି ।

### ଓଡ଼ିଶା ଲୋନ୍ ଷ୍ଟାଇପେଣ୍ଡ ଫଣ୍ଡ୍

ବିଜ୍ଞାନ, ଚିକିତ୍ସା ଓ ବୈଷୟିକ ଜ୍ଞାନ ପ୍ରଭୃତିରେ ଉଚ୍ଚଶିକ୍ଷା ଲାଭ କରିବାକୁ ଇଚ୍ଛୁକ ଥିବା ଉପଯୁକ୍ତ ଓ ମେଧାବୀ ଶିକ୍ଷାର୍ଥୀଙ୍କୁ ଭାରତ ଓ ଭାରତ ବାହାରେ

# ରାସ୍ତା ଓ କୋଠାବାଡ଼ି

## ରାସ୍ତା

ଓଡ଼ିଶାରେ ରାସ୍ତାମାନଙ୍କ ଅବସ୍ଥା ଭଲ ନୁହେଁ; ଆସନ୍ତୁ ସେ ସବୁ ଅବହେଳିତ ଅବସ୍ଥାରେ ଥିଲା । ନ୍ୟାସନାଲ ହାଇୱେମାନଙ୍କ ଉପରେ ସରକାର କାଠଯୋଡ଼ି, ବ୍ରାହ୍ମଣୀ ଓ ମହାନଦୀ ପୋଲ ତିଆରି କରୁଅଛନ୍ତି । ବ୍ରାହ୍ମଣୀ ଓ ବୈତରଣୀ ନଦୀ ଉପରେ ପୋଲ ତିଆରି କାମ ଚାଲିଛି । ତେଲ, ମୂକ୍ତା, ହାଣ୍ଡି ଖାଜମ, ଦାଗଦଲୀ, ବଣ୍ଡଦଲା, ମହାନଦୀ (ନେଉଳକୁଣ୍ଡା ନିକଟ), ଗଡ଼ଧଡ଼ା (ରାଜପୁର ନିକଟ), ଶଗଡ଼ା ଉପରେ ପୋଲ ତିଆରି କାମ ଆରମ୍ଭ ହୋଇଅଛି । କଳାହାଣ୍ଡି ଜିଲ୍ଲାରେ ଅନେକ ରାସ୍ତାର ଉନ୍ନୟନ କରାଯାଇଅଛି ।

## କୋଠାବାଡ଼ି

ଭୁବନେଶ୍ୱର ନୂଆ ରାଜଧାନୀରେ ଡାକ୍ତରଖାନା କର୍ମଚାରୀଙ୍କ କ୍ୱାର୍ଟର, ୬ଜଣ ଗେଜେଟେଡ଼ ଅଫିସରଙ୍କ କ୍ୱାର୍ଟର, ୧୬ଜଣ ଏମ.ଏଲ.ଏ.ଙ୍କ କ୍ୱାର୍ଟର, ୯ଟି ମନ୍ତ୍ରୀଙ୍କ ଆବାସ, ଏମ. ଏଲ. ଏ.ଙ୍କ ରହିବା ପାଇଁ ୩ ଧାଡ଼ି ହଷ୍ଟେଲ ଘର ଓ ୫୦ଟି ମେହେନ୍ତର କ୍ୱାର୍ଟର ଟ ୨୨,୭୩,୩୦୪୯ ଖର୍ଚ୍ଚରେ ତିଆରି ହୋଇଅଛି । ଏହାଛଡ଼ା ଅଫିସ କୋଠାକୁ ଲଗି ଗୋଟିଏ ରିଫ୍ରେସମେଣ୍ଟ ରୁମ୍ ଓ ଚଉକିଦାର କ୍ୱାର୍ଟର ଟ ୫୦,୫୭୨୯ ବ୍ୟୟରେ ନିର୍ମାଣ କରାଯାଉଛି । ଡାକ୍ତରଖାନାର କଇନ୍ଦ୍ର ଘର ତିଆରିରେ ଟ ୪,୫୯,୧୮୫୯ ଲାଗିଅଛି ।

## ଅନ୍ୟାନ୍ୟ କୋଠାବାଡ଼ି

ପୁଷ୍ପକଳ ସ୍କୁଲର ଦୁଇ ମହଲା ଘରର ଅଧେ ତିଆରି ସରିଛି । ପୂରା ତିଆରି ପାଇଁ ଟ ୩,୫୨,୩୦୦୯ ମଞ୍ଜୁର ହୋଇଥିଲା ।

ପୁରୀରେ ପୁରୁଷ ଛାତ୍ରଙ୍କ ହଷ୍ଟେଲ, ପାଖୋଇଙ୍ଗ, ଅଡ଼ମିନିଷ୍ଟ୍ରେଟିଭ ବ୍ଲକ, ସ୍ତ୍ରୀଛାତ୍ରଙ୍କ ହଷ୍ଟେଲ ଓ ୬ଟି ନର୍ସ କ୍ୱାର୍ଟର ତୋଳା ହୋଇଅଛି ।

କଟକ ବଡ଼ ଡାକ୍ତରଖାନାରେ ଦୁଇ ମହଲା ସେବୀ ବ୍ଲକ, ମିଲ୍କକିଚେନ ଓ ଲାଇବ୍ରେରୀ ଘର ଓ ଫାର୍ମାକୋଲଜୀ ବ୍ଲକ ତିଆରି ସରିଛି ।

କେନ୍ଦୁଝର ଟ୍ରାନ୍ସପୋର୍ଟ ସର୍ଭିସ ପାଇଁ ଦୁଇଟି ରୁମ୍ ଓ ଗୋଟିଏ ଶେଡ଼ ତିଆରି ହୋଇଅଛି ।

---

## ଷ୍ଟେଟ ମଟର ସରବରାହ

ଷ୍ଟେଟ ଟ୍ରାନ୍ସପୋର୍ଟ ସର୍ଭିସ ୧୯୪୮ ଜାନୁଆରୀ ପହିଲାଠାରୁ କାର୍ଯ୍ୟକାରୀ ହୋଇଛି । ୧୯୫୨-୫୩ ସୁଦ୍ଧା ସରକାର ଏଥିରେ ଟ ୧୮,୬୯,୫୬୪୯ ଲଗାଣ କରିଛନ୍ତି । ୧୯୫୩-୫୪ରେ ପୁଣି ଟ ୭,୪୧,୪୦୦୯ ଲଗାଣ ହୋଇଛି । ଏହିପରି ସର୍ବମୋଟ ଟ ୨୬,୧୦,୯୬୪୯ ଲଗାଣ ହୋଇଅଛି ।

୧୯୪୮-୪୯ ମସିହାରୁ ସରକାରୀ ବସ୍ ଭଡ଼ା ବଢ଼ିନାହିଁ । ମଟରଗାଡ଼ି, ପାର୍ଟସ ପ୍ରଭୃତି ମୂଲ୍ୟ ବଢ଼ିଥିଲେ ସୁଦ୍ଧା ସରକାର ଶସ୍ତା ସରବରାହ ଆଦର୍ଶକୁ ନଜରରେ ରଖି ଭଡ଼ା ବଢ଼ାଇବାରୁ କ୍ଷାନ୍ତ ରହିଅଛନ୍ତି । ଅସଲ୍ତା ଗ୍ରୀଷ୍ମଋତୁଠାରୁ ମଟର ଯାଉଥିବା ବାଟର ପ୍ରଧାନ ପ୍ରଧାନ ସ୍ଥାନମାନଙ୍କରେ ଯାତ୍ରୀମାନଙ୍କୁ ପାନୀୟ ଜଳ ଯୋଗାଇବାର ବ୍ୟବସ୍ଥା କରାଯାଇଛି । ମୁଖ୍ୟ ସ୍ଥାନମାନଙ୍କରେ ବସଷ୍ଟାଣ୍ଡ ଓ ଓ୍ୱେଟିଙ୍ଗ ହଲ୍ ତିଆରି କରାଯାଇଛି । ବସର କର୍ମଚାରୀମାନଙ୍କୁ ପ୍ରଭିଡେଣ୍ଟ ଫଣ୍ଡ ସୁବିଧା ଦିଆଯାଇଛି । ସେମାନଙ୍କୁ ମ.ଗଣା ଭତ୍ତାର ବ୍ୟବସ୍ଥା କରାଯାଏ ଓ ଓଡ଼ିଶା ସର୍ଭିସ କୋଡ଼ ଅନୁସାରେ ସେମାନେ ଛୁଟି ପାଆନ୍ତି । ସରକାର ସେମାନଙ୍କ ପାଇଁ କ୍ୱାର୍ଟର ତିଆରି କରିବା କଥା ବିଚାରୁଅଛନ୍ତି ।

ସରକାର, ରେଳବାଇ ଓ ସାଧାରଣ ମିଶି ଯେଉଁ ଓଡ଼ିଶା ରୋଡ଼ ଟ୍ରାନ୍ସପୋର୍ଟ କୋମ୍ପାନୀ ଗଢ଼ିଛନ୍ତି,



ନୂଆରାଜଧାନୀକୁ ଜଳ ଯୋଗାଣ ପାଇଁ ତିଆରି ହେଉଥିବା ଓ୍ୱାଟର୍ ଟାୱାର୍



ପୋତ ପଥ୍ ଦର୍ଶନରେ ସହାୟକ ଫଲ୍‌ସ ପଏଣ୍ଟ ବତୀଘର

ଉନ୍ନୟନପଥେ ଓଡ଼ିଶା।



ଓଡ଼ିଶାରେ ଜାତୀୟ ରାଜପଥ

# ଉନ୍ନୟନପଥେ ଓଡ଼ିଶା



ଓଡ଼ିଶାରେ ନୌବାଣିଜ୍ୟ ପ୍ରସାରର ଉଦ୍ୟମ:
ଅର୍ଥମନ୍ତ୍ରୀ ଶ୍ରୀ ରାଧାନାଥ ରଥ ଓ ଶ୍ରମ ଓ ବାଣିଜ୍ୟ ବିଭାଗ ମନ୍ତ୍ରୀ ଶ୍ରୀ ସୁନାରାମ ସରେନ ଓ ଅନ୍ୟାନ୍ୟମାନଙ୍କ ସହିତ ଭାରତର ରେଲବାଇ ମନ୍ତ୍ରୀ ଶ୍ରୀ ଲାଲବାହାଦୁର ଶାସ୍ତ୍ରୀଙ୍କଦ୍ୱାରା ପ୍ରସ୍ତାବିତ ପାରଦ୍ୱୀପ ବନ୍ଦରର ସ୍ଥାନ ପରିଦର୍ଶନ



ସ୍ୱାୟତ୍ତ ଶାସନର ପ୍ରଥମ ସୋପାନ:
ନୟାଗଡ଼ ଇଟାମାଟିରେ ଗ୍ରାମପଞ୍ଚାୟତ ସଭା



ଉସ୍ତାମ ଷରମୁଜେ ସ୍ଲୋଟ



କେନ୍ଦ୍ର ଧାନ ଗବେଷଣା କେନ୍ଦ୍ର, କଟକ

ତହିଁର ମୂଳଧନ ୩୫ ଲକ୍ଷ ଟଙ୍କା । ଏହା ଓଡ଼ିଶାର ଗଞ୍ଜାମ ଓ କଟକ ଜୋନ୍‌ରେ କାର୍ଯ୍ୟକାରୀ ହେଉଅଛି । ୧୯୫୩-୫୪ରେ ଏ କୋମ୍ପାନୀର ଲାଭ ଟ ୨,୦୭,୨୪୭/ ହୋଇଅଛି । ଏଥିରୁ ଖର୍ଚ୍ଚ ଟ ୧,୦୭,୨୪୭/ କଟିଗଲେ ବାକି ଟ ୧,୦୦,୦୦୦/ ଡିଭିଡେଣ୍ଡ ରୂପେ ଦିଆଯିବାର ସ୍ଥିର ହୋଇଅଛି ।

---

# ବାଣିଜ୍ୟ

## ଓଡ଼ିଶା ଗଭର୍ଣ୍ଣମେଣ୍ଟ ପ୍ରେସ

ଓଡ଼ିଶା ଗଭର୍ଣ୍ଣମେଣ୍ଟ ପ୍ରେସ ପାଇଁ ଗୋଟିଏ ସେଣ୍ଟ୍ରେଟ ମେସିନ କଣା ହୋଇଛି । ନୟାଗଡ଼ ଓ କେନ୍ଦ୍ରାପଡ଼ାରେ ଅବସ୍ଥିତ ଗଭର୍ଣ୍ଣମେଣ୍ଟ ପ୍ରେସକୁ କଟକକୁ ଉଠାଇ ଅଣାଯାଇଛି । ଗଭର୍ଣ୍ଣମେଣ୍ଟ ପ୍ରେସର କାର୍ଯ୍ୟକାରିତା ସମ୍ବନ୍ଧରେ ରିପୋର୍ଟ ଦେବାକୁ ଜଣେ ସ୍ପେଶାଲ ଅଫିସରଙ୍କୁ ନିଯୁକ୍ତ କରାଯାଇଥିଲା । ତାଙ୍କ ରିପୋର୍ଟ ବିବେଚନାଧୀନ ଅଛି ।

## ପୋଷ୍ଟ ଅଫିସ ଟେଲିଗ୍ରାମ ଅଫିସ ପ୍ରଭୃତି

୧୦୧ଟି ନୂଆ ପୋଷ୍ଟ ଅଫିସ ଖୋଲାଯାଇଅଛି । ୧୧ଟି ନୂଆ ପୋଷ୍ଟ ଅଫିସକୁ ସରକାର ଅଧୀନକୁ ଅଣାଯାଇଅଛି । ୨ଟି ସବ୍‌ଅଫିସକୁ କମ୍ବାଇନଡ଼ ଅଫିସ କରାଯାଇଛି ଓ ୩ଟି ପୋଷ୍ଟ ଅଫିସ କମ୍ବାଇନଡ଼ ଅଫିସ ହୋଇଛି । ୫ଟି ପବ୍ଲିକ କଲ ଅଫିସ, ୧ଟି ପ୍ରାଇଭେଟ ବ୍ରାଞ୍ଚ ଏକ୍ସଚେଞ୍ଜ ହୋଇଛି । ୫୮ଟି ନୂଆ ଫୋନ ଲଗାଯାଇଛି ଓ ୯ଟି ଶାଖାଫୋନ ଦିଆଯାଇଛି । ୩ଟି ସ୍ଥାନରେ ମଟରରେ ଡାକ ନିବା ବ୍ୟବସ୍ଥା କରାଯାଇଛି ।

## ବନ୍ଦର

ଚାନ୍ଦବାଲି ବନ୍ଦରରେ ଜାହାଜରେ ଟ ୭୫୩-୯୩୬୨୪୯ ର କାରବାର ହୋଇଥିଲା । ବନ୍ଦର ଟ ୭୩୬୧୮/ ଆୟ କରିଥିଲା । ଚାନ୍ଦବାଲି ଓ ଗୋପାଳପୁର ବନ୍ଦରର ଉନ୍ନତିବିଧାନ ନିମନ୍ତେ ଭାରତ ସରକାର ୨୦୫ ଲକ୍ଷ ଟଙ୍କା ଋଣ ଦେବାର କଥା ହୋଇଅଛି । ପାରାଦ୍ୱୀପରେ ଗୋଟିଏ ନୂଆ ବନ୍ଦର ସ୍ଥାପନ କରିବା କଥା ବିବେଚନାଧୀନ ଅଛି ।

---

# ଗ୍ରାମପଞ୍ଚାୟତ

୫୦୦୦ରୁ ୭୦୦୦ ବାସିନ୍ଦା ଥିବା ଗ୍ରାମମାନଙ୍କରେ ଯଦି ବାର୍ଷିକ ଟ ୨,୫୦୦/ ଆୟ ହେଉଥିବ ତେବେ ତହିଁରେ ଗ୍ରାମପଞ୍ଚାୟତ ପ୍ରତିଷ୍ଠା କରିବାର ସିଦ୍ଧାନ୍ତ ହୋଇଅଛି । ବଲାଙ୍ଗୀର, ସୁନ୍ଦରଗଡ଼, ମୟୂରଭଞ୍ଜ, ବାଲେଶ୍ୱର, କୋରାପୁଟ, ସମ୍ବଲପୁର, ଗଞ୍ଜାମ ଓ କଳାହାଣ୍ଡି ଜିଲ୍ଲା ମାନଙ୍କରେ ବହୁସଂଖ୍ୟକ ଗ୍ରାମପଞ୍ଚାୟତ ସ୍ଥାପିତ ହୋଇଅଛି । ପୁରୁଣା ଗ୍ରାମପଞ୍ଚାୟତମାନଙ୍କୁ ପୁନର୍ଗଠିତ କରିବା ଛଡ଼ା ୭୨୪ଟି ନୂଆ ଗ୍ରାମପଞ୍ଚାୟତ ସ୍ଥାପନ କରାଯାଇଅଛି । ସେମାନଙ୍କ ମଧ୍ୟରୁ ୪୧୩ଟିକୁ ଏ ବର୍ଷ ଟ ୧୫୦/ ହିସାବରେ ଗ୍ରାଣ୍ଟ ଦିଆଯାଇଛି । ଅନ୍ୟାନ୍ୟଙ୍କୁ ୧୯୫୪-୫୫ରେ ଗ୍ରାଣ୍ଟ ଦିଆଯିବ । ମଟର ଭେଇକଲ ଟାକ୍ସେସନ ଗ୍ରାଣ୍ଟରୁ ଟ ୫୦,୦୦୦/ ଗ୍ରାମପଞ୍ଚାୟତମାନଙ୍କ ମଧ୍ୟରେ ବଣ୍ଟାଯାଇଛି । ଏଥିରୁ ସେମାନେ ମଟରଯୋଗ୍ୟ ରାସ୍ତା ତିଆରି କରିବାରେ ଖର୍ଚ୍ଚ କରିବେ । କେନ୍ଦ୍ର ପଥ ଟିକସ ଆୟର ଅର୍ଦ୍ଧେକ ଅର୍ଥାତ ଟ ୯,୭୨,୪୦୦/ ସରକାର ଉନ୍ନୟନ କାର୍ଯ୍ୟପାଇଁ ଗ୍ରାମପଞ୍ଚାୟତମାନଙ୍କୁ ଅର୍ପଣ କରିଛନ୍ତି । ପୂର୍ବେ ଗ୍ରାମପଞ୍ଚାୟତମାନଙ୍କ ଅଧୀନରେ ୩୪୦ଟି ଧାନଗୋଲା ଥିଲା । ପୁଣି ୧୮୯ଟି ଧାନଗୋଲା ତିଆର କରିବାକୁ

ସରକାର ସ୍ଥାନ ଦେଇଅଛନ୍ତି । କେତେକ ଦରିଦ୍ର ଅଦେବ', ସାଂ ଓ ସର୍ବସାଧାରଣ ଲୋକଙ୍କ ଓ ଭାରର ପରିଚାଳନା ଗ୍ରାମହିତ ସୃତମାନଙ୍କ ହାତରେ ଛାଡ଼ି ଦିଆଯାଇଛି । ଏଥିରେ ସେମାନଙ୍କ ଆସ୍ଥା ବୃଦ୍ଧି ହେବ ।

୧୯୫୨-୫୩ରେ ୨୭୯ଟି ଅଦାଲତ ପଞ୍ଚାୟତ ଥିଲା; ବର୍ତ୍ତମାନ ୨୦୫ଟି ହେଲାଣି । ଅଦାଲତ ପଞ୍ଚାୟତମାନେ କେତେକ ଛୋଟ ଛୋଟ ଦେୱାନୀ ଓ ଫୌଜଦାରୀ ମକଦ୍ଦମା ବିଚାର କରିଥିଲେ ।

---

## ସାଧାରଣ ସ୍ୱାସ୍ଥ୍ୟ

ସାଧାରଣ ସ୍ୱାସ୍ଥ୍ୟ ବ୍ୟବସ୍ଥା ନିମନ୍ତେ ରାଜ୍ୟକୁ ୧୧୮ଟି ସ୍ୱାସ୍ଥ୍ୟରେଞ୍ଜରେ ବିଭକ୍ତ କରାଯାଇଛି । ସ୍ୱାସ୍ଥ୍ୟଉପସର ନିରୀକ୍ଷକମାନଙ୍କ ଅଧୀନରେ ଥିବା ସାଧାରଣ ସ୍ୱାସ୍ଥ୍ୟ କର୍ମଚାରୀମାନଙ୍କୁ ସରକାର ୧୯୫୭ ମସିହାରୁ ନିଜ କର୍ତ୍ତୃତ୍ୱାଧୀନ କରି କାର୍ଯ୍ୟର ସୌକର୍ଯ୍ୟ ବୃଦ୍ଧି କରିଅଛନ୍ତି । ପୁଣି ୧୭ଟି ନୂଆ ସ୍ୱାସ୍ଥ୍ୟରେଞ୍ଜ ସୃଷ୍ଟି କରିବାକୁ ସରକାର ବ୍ୟବସ୍ଥା କରୁଅଛନ୍ତି ।

### ମେଲେରିଆ

ମେଲେରିଆ ସମେତ ସମସ୍ତ ଜ୍ୱରରେ ମୋଟ ୧,୬୧,୬୧୩ ରୋଗୀ ମରିଛନ୍ତି । ନ୍ୟାସନାଲ ମେଲେରିଆ ଅର୍ଗାନାଇଜେସନ, ମେଲେରିଆ ଟୀମ୍, ମେଲେରିଆ କଣ୍ଟ୍ରୋଲ ୟୁନିଟ ପ୍ରଭୃତି ବିବିଧ ଫଳପ୍ରଦ ବ୍ୟବସ୍ଥାରେ ସରକାର ମେଲେରିଆ ପ୍ରତିରୋଧ କରିବାରେ ବ୍ୟସ୍ତ ହୋଇ ଅଛନ୍ତି । ୧୯୫୩-୫୪ରେ ଏ ବାବଦରେ ଟ ୨,୩୩,୨୦୦୯ ଖର୍ଚ୍ଚ ହୋଇଅଛି ।

### କାଳଜ୍ୱର

ପୁରୀ, କଟକ, ବାଲେଶ୍ୱର ଜିଲ୍ଲାମାନଙ୍କରେ କାଳଜ୍ୱର ପ୍ରକୋପ ଖୁବ ବେଶି । ଇଣ୍ଡିଆନ କାଉନସିଲ ଅଫ୍ ମେଡ଼ିକାଲ୍ ରିସର୍ଚ୍ଚ କାଳଜ୍ୱରରେ ହେତ୍ରାଜାନର ପ୍ରୟୋଗ କରି ତହିଁର ଉପଯୋଗିତା ପ୍ରତିପାଦନ କରିଅଛନ୍ତି । ଓଡ଼ିଶାରେ ଏ କାର୍ଯ୍ୟର ବ୍ୟୟ ଟ ୫୦,୮୦୦୯ ମଧ୍ୟରୁ ଓଡ଼ିଶା ସରକାର ଅର୍ଦ୍ଧେକ ବହନ କରିଛନ୍ତି । ଓଡ଼ିଶା ସରକାର ଏ କାର୍ଯ୍ୟ ନିଜେ କରିବାକୁ ୧୯୫୪-୫୫ ବଜେଟରେ ବ୍ୟବସ୍ଥା ହୋଇଅଛି ।

### ଯକ୍ଷ୍ମା

ଓଡ଼ିଶାରେ ୪୦,୦୦୦ ଯକ୍ଷ୍ମାରୋଗୀ ଅଛନ୍ତି । ଅନ୍ତତଃ ୧୦୮୮ ଜଣ ରୋଗୀଙ୍କ ଚିକିତ୍ସା କରିବା ଦରକାର; କିନ୍ତୁ ମୋଟେ ୧୦୦ ରୋଗୀଙ୍କ ଚିକିତ୍ସା ପାଇଁ ସରକାର ଓଡ଼ିଶା ଭିତରେ ଓ ବାହାରେ ସ୍ଥାନର ବ୍ୟବସ୍ଥା କରି ପାରି ଅଛନ୍ତି । ଏ କ୍ଷେତ୍ରର ପୂର୍ଣ୍ଣ ସୁବିଧା ପାଇଁ ଯେତେ ଅର୍ଥର ପ୍ରୟୋଜନ ତେତେ ଅର୍ଥ ସରକାର ଖର୍ଚ୍ଚ କରିବାକୁ ଅସମର୍ଥ । ତେଣୁ ବାର୍ଷିକ ଟ ୩୦,୦୦୯ ବ୍ୟୟରେ ବି.ସି.ଜି. ଟୀକା ଦେବାର ବ୍ୟବସ୍ଥା ହୋଇଛି । ସରକାରଙ୍କ ନିଯୁକ୍ତ କର୍ମଚାରୀମାନେ ୨,୨୯,୯୩୯ ବ୍ୟକ୍ତିଙ୍କୁ ପରୀକ୍ଷା କରିଛନ୍ତି ଓ ୮୪,୬୭୫ ବ୍ୟକ୍ତିଙ୍କୁ ଟୀକା ଦେଇଛନ୍ତି । ୧୯୫୪-୫୫ ବଜେଟରେ ଏହା ବି.ସି.ଜି. ଟୀକା ବାବଦରେ ଟ ୧,୯୧,୧୪୬୯ ରଖାଯାଇଛି ।

### କୁଷ୍ଠ

ଓଡ଼ିଶାରେ ୧.୭ ଲକ୍ଷ କୁଷ୍ଠରୋଗୀ; ତନ୍ମଧ୍ୟରୁ ୪୫୦୦୦ ସଂକ୍ରାମକ ଅବସ୍ଥାରେ ଅଛନ୍ତି । କୁଷ୍ଠ ନିବାରଣ ପାଇଁ ଗୋଟିଏ ପାଇଲଟ ଯୋଜନାନୁଯାୟୀ କାର୍ଯ୍ୟ ହେଉଛି । ଏହା କସ୍ତୁରବା ଟ୍ରଷ୍ଟ ଫଣ୍ଡ ଦ୍ୱାରା ପ୍ରବର୍ତ୍ତିତ । ଜଣେ ପ୍ରାଦେଶିକ କୁଷ୍ଠ ଓ ସ୍ୱାସ୍ଥ୍ୟ ଉପଦେଷ୍ଟା ଅଫିସରଙ୍କ ଅଧୀନରେ ୪ ଜଣ ଡାକ୍ତର ଅଫିସର ଓ ସହକାରୀ ଥାଇ କୁଷ୍ଠ ନିବାରଣ ପ୍ରଚେଷ୍ଟା

ହେଉଛି । ଏଥିପାଇଁ ୧୯୫୩-୫୪ ବଜେଟରେ ଟ ୨,୨୫,୮୮୪ ରଖାଯାଇଛି ।

## ସ୍କୁଲ ମେଡ଼ିକାଲ ଅଫିସର

ଜଣେ ସ୍କୁଲ ମେଡ଼ିକାଲ ଅଫିସରଙ୍କ ଦ୍ୱାରା କାର୍ଯ୍ୟ ଚଳୁଥାନ୍ତା ନ ହେବାରୁ ଆଉ ଜଣେ ଅଫିସରଙ୍କୁ ରଖାଯାଇଛି । ଏ ବାବଦରେ ବଜେଟରେ ଟ ୧୨,୨୭୨ ରଖାଯାଇଛି ।

ହଇଜା ନିବାରଣ ଟୀକା ଦେବାରେ ଟ ୨୦,୦୦୦ ଓ ହଇଜାନିବାରକ ଟୀକା ଔଷଧ କିଣିବାରେ ଟ ୧,୫୦,୦୦୦ ବ୍ୟୟ କରାଯାଇଛି ।

## ପାଇପରେ ପାନୀୟ ଜଳ ଯୋଗାଣ ବ୍ୟବସ୍ଥା

୧୯୫୩ରେ କଟକ ଟାଉନରେ, ଚାରବାଟିଆ ଶରଣାର୍ଥୀ କ୍ୟାମ୍ପରେ, ଢେଙ୍କାନାଳ ଟାଉନରେ, ବାରିପଦା ଟାଉନରେ, ସୁନ୍ଦରଗଡ଼ ଟାଉନରେ, ସମ୍ବଲପୁର ଟାଉନରେ, ଭୁବନେଶ୍ୱର ନୂଆ ରାଜଧାନୀରେ ଓ ପୁରୀରେ ପାଇପଦ୍ୱାରା ପାନୀୟ ଜଳ ଯୋଗାଣର ବ୍ୟବସ୍ଥା ହୋଇଅଛି । ଏହାଛଡ଼ା ବ୍ରହ୍ମପୁର ଟାଉନ, [illegible] ଟାଉନ ଓ [illegible] ଟାଉନରେ ମଧ୍ୟ ପାନୀୟ ଜଳ ଯୋଗାଣ ପାଇଁ ପାଣିକଳ ଖଞ୍ଜାଯାଉଛି ।

## ଚିକିତ୍ସା ବ୍ୟବସ୍ଥା

ଓଡ଼ିଶାରେ ୩୮୭ ଡାକ୍ତରଖାନା ଓ ଦାତବ୍ୟ ଔଷଧାଳୟ ଅଛି । ଆୟୁର୍ବେଦୀୟ ଅନୁଷ୍ଠାନସଂଖ୍ୟା ୮୫ । ଏହାଛଡ଼ା ୩ଟି ହୋମିଓପାଥିକ ଓ ୧ଟି ୟୁନାନି ଦାତବ୍ୟ ଚିକିତ୍ସାଳୟ ରହିଛି । ୫ଟି ନୂଆ ଦାତବ୍ୟ ଚିକିତ୍ସାଳୟ ଖୋଲାଯାଇଛି ।

ଚିକିତ୍ସାବିଭାଗ ବଜେଟରେ ଟ ୬୨,୯୭,୫୮୮ରେ ବ୍ୟବସ୍ଥା କରାଯାଇଛି । ଗତବର୍ଷ ତାହା ଟ ୫୪,୬୨,୨୭୬ ଥିଲା ।

ଶରଣାର୍ଥୀଙ୍କ ଚିକିତ୍ସାପାଇଁ ଚାରବାଟିଆ ଓ ବ୍ରଜନଗରଠାରେ ଦୁଇଟି ଡାକ୍ତରଖାନା ଖୋଲାଯାଇଛି ।

କୋରାପୁଟ, ମୟୂରଭଞ୍ଜ ଓ ସୁନ୍ଦରଗଡ଼ ପ୍ରଭୃତି ଆଦିବାସୀବହୁଳ ଅଞ୍ଚଳମାନଙ୍କରେ ୬୩ ପ୍ରଥମ ଶ୍ରେଣୀ ୨ ଦ୍ୱିତୀୟ ଶ୍ରେଣୀ, ୯ ତୃତୀୟ ଶ୍ରେଣୀ, ୨ ଚତୁର୍ଥଶ୍ରେଣୀ, ୪ ପଞ୍ଚମ ଶ୍ରେଣୀ, ୨ ଷଷ୍ଠ ଶ୍ରେଣୀ ଡାକ୍ତରଖାନା ଓ ୧୦ଟି ଆୟୁର୍ବେଦୀୟ ଚିକିତ୍ସାଳୟ ଅଛି ।

ତଫସିଲଭୁକ୍ତ ସଂପ୍ରଦାୟ ଓ ଜାତିମାନଙ୍କ ପାଇଁ ଚିକିତ୍ସାର ବିଶେଷ ଓ ସ୍ୱତନ୍ତ୍ର ବ୍ୟବସ୍ଥା କରାଯାଇଛି ଏବଂ ସେମାନଙ୍କ ମଧ୍ୟରୁ ଶିକ୍ଷାର୍ଥୀମାନଙ୍କପାଇଁ ଚିକିତ୍ସା ଶିକ୍ଷାନୁଷ୍ଠାନମାନଙ୍କରେ ବିଶେଷ ସୁବିଧା ଓ ସାହାଯ୍ୟର ବ୍ୟବସ୍ଥା ରହିଛି ।

ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜ କଟକରେ ଏମ. ବି. ବି. ଏସ. ଡିଗ୍ରୀ ପାଇଁ ଶିକ୍ଷା ଦିଆଯାଏ । ଗୋପବନ୍ଧୁ ଆୟୁର୍ବେଦ ବିଦ୍ୟାପୀଠରେ ଆୟୁର୍ବେଦ ଶିକ୍ଷା ଦିଆଯାଏ । ବ୍ରହ୍ମପୁର ମିଡ୍‌ୱାଇଫ ଟ୍ରେନିଂ ସ୍କୁଲର ଶିକ୍ଷାର୍ଥୀସଂଖ୍ୟା ବୃଦ୍ଧିର ବ୍ୟବସ୍ଥା ହୋଇଛି । ଶିକ୍ଷକମାନଙ୍କୁ ସ୍ୱତନ୍ତ୍ର ଆଲାଉନ୍‌ସ ଦିଆଯାଇଛି ।

ନିମ୍ନଲିଖିତ ଅନୁଷ୍ଠାନମାନଙ୍କରେ ନର୍ସ ଶିକ୍ଷା ପାଉଛନ୍ତି ।

୧ । ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜ ହସ୍ପିଟାଲ କଟକ ।
୨ । ବାପ୍ଟିଷ୍ଟ ମିସନ ହସ୍ପିଟାଲ, ବ୍ରହ୍ମପୁର ।
୩ । ମୁର୍ଦ୍ଦିଡ଼ ମେମୋରିଆଲ ହସ୍ପିଟାଲ, ଜି. ଉଦୟଗିରି ।
୪ । ଗଭର୍ଣ୍ଣମେଣ୍ଟ ହେଡ଼କ୍ୱାର୍ଟର୍ସ ହସ୍ପିଟାଲ, ବାରିପଦା ।

ଲେଡ଼ି ଇରଉଇନ ହେଲ୍‌ଥ ସ୍କୁଲ, ଦିଲ୍ଲୀରେ ହେଲ୍‌ଥ ଭିଜିଟର କୋର୍ସ ପାଠ ପଢ଼ିବାକୁ ଜଣେ ଶିକ୍ଷାର୍ଥୀ ସରକାରୀ ଖର୍ଚ୍ଚରେ ଏବଂ ଦୁଇଜଣ ଓଡ଼ିଶା ରେଡ଼କ୍ରସ ଶାଖାର ଅନୁକୂଲ୍ୟରେ ଯାଇଛନ୍ତି ।

ମଫସଲ ଅଞ୍ଚଳରେ ପ୍ରସବ କାର୍ଯ୍ୟରେ ସାହାଯ୍ୟ କରିବାକୁ ଧାଇ ତାଲିମ ଦେବାକୁ ପ୍ରତି ଜିଲ୍ଲାରୁ ୬ଜଣ ହିସାବରେ ସ୍ତ୍ରୀଙ୍କୁ ଧାଇଟ୍ରେନିଙ୍ଗ୍ ନେବାକୁ କଟକ

ବଡ଼ଡାକ୍ତରଖାନା, ବ୍ରହ୍ମପୁର, ପୁରୀ, ବାରିପଦା ଓ ବଲାଙ୍ଗୀର ହେଡ୍‌କ୍ୱାର୍ଟର ଡାକ୍ତରଖାନାମାନଙ୍କରେ ବ୍ୟବସ୍ଥା ହୋଇଛି । ସେମାନେ ମାସିକ ଟ ୨୫୯ ହିସାବରେ ଷ୍ଟାଇପେଣ୍ଡ ପାଇବେ ।

ଭିକ୍ଟୋରିଆ ମେମୋରିଆଲ ସ୍କଲାରସିପ ପାଇ ୪୫ ଜଣ ଧାତ୍ରୀ ଟ୍ରେନିଂ ପାଇବେ ।

ମେଡ଼ିକାଲ ଟେକ୍‌ନିସିଆନ ଟ୍ରେନିଂ ମଧ୍ୟ କଟକ ବଡ଼ଡାକ୍ତରଖାନାରେ ୧୮ ମାସ ଯାଏଁ ଦିଆଯାଉଛି । ଥରକେ ୨୦ ଜଣ ହିସାବରେ ଶିକ୍ଷାର୍ଥୀ ନିଆଯାଉଅଛନ୍ତି ।

ପ୍ରତି ଜିଲ୍ଲାର ହେଡ୍‌କ୍ୱାର୍ଟର ଡାକ୍ତରଖାନାମାନଙ୍କରେ ପ୍ରତ୍ୟେକ ୩ ଜଣ କରି କମ୍ପାଉଣ୍ଡର ଟ୍ରେନିଂ ପାଆନ୍ତି । ଟ୍ରେନିଂର କାଳ ୨୧ ମାସ । ଏ ବର୍ଷ ତପସିଲଭୁକ୍ତ ଓ ସମ୍ପ୍ରଦାୟ ଶିକ୍ଷାର୍ଥୀଙ୍କ ମଧ୍ୟରୁ ୯ ଜଣଙ୍କ ପାଇଁ ଅତିରିକ୍ତ ବ୍ୟବସ୍ଥା କରା ହୋଇଛି ।

## ବିଭିନ୍ନ ରୋଗର ଚିକିତ୍ସା

ଯକ୍ଷ୍ମାରୋଗୀଙ୍କୁ ଅର୍ଥିକ ସାହାଯ୍ୟରୂପେ ସରକାର ଏ ବର୍ଷ ଟ ୩୦୦୦୯ ମଞ୍ଜୁର କରିଅଛନ୍ତି । ଏହାଛଡ଼ା ଯକ୍ଷ୍ମା, କଳାଜ୍ୱର, ମସ୍ତିଷ୍କବିକାର, କୁଷ୍ଠ, ଯୌନବ୍ୟାଧି, କର୍କଟରୋଗ ଆଦିପାଇଁ ସରକାର ସ୍ୱତନ୍ତ୍ର ଚିକିତ୍ସା ବ୍ୟବସ୍ଥା କରନ୍ତି ।

---

# ନିଶାନିବାରଣ

### ମଦ୍ୟ

କଂଗ୍ରେସ ସରକାର କ୍ଷମତା ଗ୍ରହଣ କଲାଠାରୁ ୧୯୪୭-୪୮ରୁ ଆରମ୍ଭ କରି ଓଡ଼ିଶାରେ ମଦ୍ୟ ନିବାରଣ ଆରମ୍ଭ ହୋଇଅଛି । ସେ ବର୍ଷ କଟକ ଜିଲ୍ଲାର ୧୦ଟି ଥାନାରୁ ମଦ୍ୟ ପୂର୍ଣ୍ଣ ନିବାରଣ କରାଯାଇଥିଲା । ପର ବର୍ଷ ପୁରୀର ୧୨ଟି ଓ ବ୍ରହ୍ମପୁରର ୧୬ଟି ଥାନାରେ ମଦ୍ୟ ନିବାରଣ କରାଗଲା । ୧୯୫୩-୫୪ ରେ କଟକ, ପୁରୀ ଓ ବାଲେଶ୍ୱର ଜିଲ୍ଲାମାନଙ୍କର ମଫସଲ ଅଞ୍ଚଳ ଓ ପୁରୀ ସହରରୁ ମଦ ନିର୍ବାସନ କରାଗଲା । ମଦ୍ୟ ବ୍ୟବସାୟ ବେଆଇନ ବୋଲି ଘୋଷିତ ହେଲା । ଆନ୍ଧ୍ର ସରକାରଙ୍କ ରାଜ୍ୟର ସୀମାରୁ ୫ ମାଇଲ ମଧ୍ୟରେ ମଦ୍ୟ ବେଆଇନ ବୋଲି ଘୋଷିତ ହୋଇଅଛି । କ୍ରମଶଃ ମଦ୍ୟ ନିବାରଣ ନୀତି ଓଡ଼ିଶା ରାଜ୍ୟର ସର୍ବତ୍ର ପ୍ରବର୍ତ୍ତିତ ହେଉଅଛି ।

### ଅଫିମ

୧୯୩୮ ମସିହାରେ ପ୍ରଥମ କଂଗ୍ରେସ ମନ୍ତ୍ରିମଣ୍ଡଳଙ୍କ ଅମଳରେ ବାଲେଶ୍ୱର ଜିଲ୍ଲାରେ ଅଫିମ ରେଜିଷ୍ଟରରେ ଅଫିମିଆମାନଙ୍କୁ ରଖାଗଲା । ୧୯୪୯ରେ ଭାରତ ସରକାରଙ୍କ ୧୦ବର୍ଷିଆ ନୀତି ପ୍ରବର୍ତ୍ତିତ ହେଲା । ଏ ନୀତି ଅନୁସାରେ ଅଫିମ ଖର୍ଚ୍ଚ ବାର୍ଷିକ ଶତକଡ଼ା ୧୦ ହାରରେ କମାଇ ଦିଆଯାଉଅଛି । ୧୯୪୯ କୋଟାରୁ ବର୍ତ୍ତମାନ କୋଟା ଶତକଡ଼ା ୫୦ ଭାଗ କମ୍ । ଏ କମ୍‌ତି ଯୋଗୁଁ ସରକାର ପ୍ରତିବର୍ଷ ରାଜସ୍ୱରୁ ୧୦ ଲକ୍ଷ ଟଙ୍କା ହରାଉଅଛନ୍ତି, ତଥାପି ଓଡ଼ିଶାର ୧½ ଲକ୍ଷ ଅଫିମଖୋରଙ୍କୁ ନିଶାରାକ୍ଷସ କବଳରୁ ରକ୍ଷା କରିବାକୁ ସରକାର ଦୃଢ଼ସଂକଳ୍ପ ।

ସରକାର ଏ ବାବଦରେ ୧୦ ଲକ୍ଷ ଛଡ଼ା ୧୯୫୩-୫୪ରେ ଅନ୍ୟାନ୍ୟ ନିଶାନିବାରଣ ବ୍ୟବସ୍ଥା ଯୋଗୁଁ ୭ ଲକ୍ଷ ଟଙ୍କା କ୍ଷତି ସହିଛନ୍ତି । ତଥାପି ନିଶାଖୋରଙ୍କ ଆର୍ଥିକ ଜୀବନରେ ନିଶାନିବାରଣ ଯୋଗୁଁ ଯେଉଁ ଅଭୂତପୂର୍ବ ଉନ୍ନତି କ୍ରମଶଃ ଲକ୍ଷିତ ହେଉଛି, ତହିଁରେ ନିଶାନିବାରଣରେ ଦୃଢ଼ ରହିବାକୁ ସରକାର ପ୍ରେରଣା ପାଉଅଛନ୍ତି । ସ୍କୁଲରେ ଦୋଳିଆମାନଙ୍କ ମଧ୍ୟରେ ନିଶାନିବାରଣ ପାଇଁ ଗୋଷ୍ଠୀ





ପାଥୋଲଜିକାଲ୍ ୱାର୍ଡ଼
କଟକ ବଡ଼ଡାକ୍ତରଖାନା



ନୂଆ ରାଜଧାନୀ ବଡ଼ଡାକ୍ତରଖାନା ଭୁବନେଶ୍ୱର

ବେସରକାରୀ କମିଟି କାର୍ଯ୍ୟ କରୁଅଛି । ଓଡ଼ିଶା ତାଳଗୁଡ଼ ସମିତି ତାଳଗୁଡ଼ ଉଆର ଦ୍ୱାରା ତାଡ଼ି ନିବାରଣ ଓ ତାଡ଼ିଖୋରଙ୍କ ମଧ୍ୟରେ ନିଶା ନିବାରଣର ପ୍ରଚେଷ୍ଟା କରୁଅଛନ୍ତି ।

# ଶ୍ରମିକମଙ୍ଗଳ

ଶ୍ରମିକମାନଙ୍କ ମଙ୍ଗଳବିଧାନ ପାଇଁ କେତେକ ଆଇନ କାର୍ଯ୍ୟକାରୀ କରାଯାଇଛି । ୧୯୫୩ର ଇଣ୍ଡଷ୍ଟ୍ରିଆଲ ଡିସ୍‌ପ୍ୟୁଟସ (ଆମେଣ୍ଡମେଣ୍ଟ) ଆକ୍ଟ ତନ୍ମଧ୍ୟରେ ଉଲ୍ଲେଖଯୋଗ୍ୟ । ତା ଛଡ଼ା ଓଡ଼ିଶା ମାଟର୍ନିଟି ବେନିଫିଟ ଆକ୍ଟ । ଅନ୍ୟାନ୍ୟ ଆଇନ ହେଉଛି—(୧) ଆମେଣ୍ଡମେଣ୍ଟ ଅଫ୍ ଫର୍ମସ ୪ ଅଫ୍ ଓଡ଼ିଶା ଫାକ୍‌ଟରିଜ ରୁଲ୍‌ସ, (୨) ଏନଫୋର୍ସମେଣ୍ଟ ଅଫ୍ ରୁଲ୍‌ସ ୫୩ ଓଡ଼ିଶା ଫାକ୍‌ଟରିଜ ରୁଲ୍‌ସ, (୩) ଏନଫୋର୍ସମେଣ୍ଟ ଅଫ୍ ରୁଲ ୯୭ ଅଫ୍ ଓଡ଼ିଶା ଫାକ୍‌ଟରିଜ ରୁଲ୍‌ସ ଓ (୪) ଏନ୍‌ଫୋର୍ସମେଣ୍ଟ ଅଫ ରୁଲ ୭୪ (୧) ଅଫ୍ ଓଡ଼ିଶା ଫାକ୍‌ଟରିଜ ରୁଲ୍‌ସ ।

ଗୋଟିଏ ଲେବର ଆଡ଼ଭାଇଜରି ବୋର୍ଡ ସ୍ଥାପିତ ହୋଇଅଛି । ଏଥିରେ ଶ୍ରମିକମାନଙ୍କ ସମସ୍ୟା ଆଲୋଚିତ ହୁଏ । ଶ୍ରମିକ ବିଭାଗର ଅଫିସରମାନେ ଓ ସବ୍‌ଡିଭିଜନାଲ ଅଫିସରମାନେ ବହୁତ ଶିଳ୍ପାନୁଷ୍ଠାନମାନଙ୍କର ଧର୍ମଘଟ ଆଦି ବିବାଦ ନିଷ୍ପତ୍ତି କରିଥିଲେ ।

୨୦ ଟି ଓ୍ୱାର୍କସ୍ କମିଟି ଗଠିତ ହୋଇଛି । ୧୦୦ରୁ ଅଧିକ ଶ୍ରମିକ ନିଯୁକ୍ତ କରିଥିବା ଶିଳ୍ପାନୁଷ୍ଠାନମାନଙ୍କରେ ଏ ସବୁ କାର୍ଯ୍ୟକାରୀ ହୋଇଥିଲା ।

ଦୁର୍ଘଟଣାରେ ଆହତ ହୋଇଥିବା ଶ୍ରମିକମାନଙ୍କୁ ଲେବର କମିସନର ମାଲିକମାନଙ୍କଠାରୁ କ୍ଷତିପୂରଣ ଦିଆଇ ଦେଇଥିଲେ ।

ଏ ବର୍ଷ ୧୨ଟି ନୂଆ ଟ୍ରେଡ୍ ୟୁନିଅନ ରେଜିଷ୍ଟ୍ରି ହୋଇଥିଲା ।

ଶିଳ୍ପାନୁଷ୍ଠାନ ମାଲିକମାନଙ୍କ ସ୍ୱେଚ୍ଛାକୃତ ସାହାଯ୍ୟରେ ବ୍ରଦବାଲି, ଛତ୍ରପୁର, ବାଲେଶ୍ୱର ଓ ଝାରସୁଗୁଡ଼ାରେ ଚାରିଟି ଶ୍ରମିକମଙ୍ଗଳ କେନ୍ଦ୍ର ସ୍ଥାପିତ ହୋଇଥିଲା । ଶ୍ରମମନ୍ତ୍ରୀ ପ୍ରତ୍ୟେକଙ୍କୁ ଟ୧୦୦୦ ଲେଖାଏଁ ତାଙ୍କ ଅନୁଗ୍ରହ ପାଣ୍ଠିରୁ ଦାନ କରିଥିଲେ । ବ୍ରହ୍ମପୁର, ଜୟପୁର ଓ ଖଡ଼ିଆଳ ସେଣ୍ଟରରେ ମଧ୍ୟ ଶ୍ରମିକମଙ୍ଗଳ କେନ୍ଦ୍ର ସ୍ଥାପନ କରାଯାଇଥିବ ।

ଭାରତ ସରକାର [illegible] ବେନିଫିଟ ଫଣ୍ଡରୁ ୩୦୦୦ ଟଙ୍କା ଦେଇଅଛନ୍ତି । ଏଥିସହିତ ରାଜ୍ୟ ସରକାରଙ୍କ ଦେବା ୩୦୦୦ ଟଙ୍କା ଓ ମାଲିକ ଓ ଶ୍ରମିକମାନଙ୍କଠାରୁ ଆଦାୟ ୪୦୦୦ ଟଙ୍କା ମିଶି ଶ୍ରମିକମାନଙ୍କ ପାଇଁ ଲାଇବ୍ରେରୀ, ରେଡ଼ିଓ, ଫିଲ୍ମ ଆଦି କିଣାଯାଇ ସେମାନଙ୍କ ସାଂସ୍କୃତିକ ମନୋରଞ୍ଜନ କରାଯିବ ।

ଶ୍ରମିକ ବିଭାଗ ଦ୍ୱାରା ଶୀତ ଫିଲ୍ମ ଓ ଲୋକସମ୍ପର୍କ ବିଭାଗର ଫିଲ୍ମ ସବୁ ଶ୍ରମିକମାନଙ୍କୁ ଦେଖାଯାଇଥିଲା ।

ଭାରତ ସରକାରଙ୍କ ପ୍ରଦତ୍ତ ୧୫ ଲକ୍ଷ ଟଙ୍କା ଓଡ଼ିଶା ଟେକ୍‌ସଟାଇଲ୍ ମିଲ୍‌ସ ଚୌଦ୍ୱାର, ଦୁର୍ଗା ଗ୍ଲାସ ଫ୍ୟାକ୍ଟରି, ବାରଙ୍ଗ ଓ ଓଡ଼ିଶା ସିମେଣ୍ଟ ଲିମିଟେଡ୍ ରାଜଗାଙ୍ଗପୁରଙ୍କ ମଧ୍ୟରେ ବଣ୍ଟାଯାଇଥିଲା ଓ ସେଥିରେ ସେମାନେ ଶ୍ରମିକମାନଙ୍କ ପାଇଁ କ୍ୱାର୍ଟର ତୋଳିଥିଲେ । ବର୍ତ୍ତମାନ ବର୍ଷ ଜୟପୁର ସୁଗାର କୋମ୍ପାନୀଙ୍କ ପାଇଁ ୧ ଲକ୍ଷ ଟଙ୍କା ମଞ୍ଜୁର ହୋଇଥିଲା ।

ଶ୍ରମିକମାନଙ୍କ ସ୍ୱାସ୍ଥ୍ୟ ଓ ନିରାପତ୍ତା ପାଇଁ ଆବଶ୍ୟକୀୟ ବ୍ୟବସ୍ଥା କରାଯାଇଥିଲା ।

ବହୁତ ଶିଳ୍ପାନୁଷ୍ଠାନମାନେ ଲେବର ଅଫିସର ନିଯୁକ୍ତ କରିଥିଲେ ।

୩୦୯୯ ଜଣ ସ୍ତ୍ରୀ ଶ୍ରମିକ ଓ ୫୩୪ ଯୁବକ ଓ ବାଳକ ଶ୍ରମିକ ବର୍ତ୍ତମାନ ବର୍ଷ କାର୍ଯ୍ୟ କରୁଥିଲେ ।

# ଶରଣାର୍ଥୀ ଥଇଥାନ

ଓଡ଼ିଶାରେ ଶୁଣବାଡ଼ିଆରେ ଏକମାତ୍ର ଟ୍ରାଞ୍ଜିଟ୍ କ୍ୟାମ୍ପ ଅଛି । ଏଥିରେ ୩,୫୦୦ ଜଣ ଶରଣାର୍ଥୀ ସ୍ଥାନ ପାଇ ଅଛନ୍ତି । ସେମାନେ ସାହାଯ୍ୟ ତ ପାଆନ୍ତି, ତା ଛଡ଼ା ନିକଟବର୍ତ୍ତୀ କ୍ଷେତରେ ଧାନକଟା କାର୍ଯ୍ୟରେ ଯୋଗଦେଇ କିଛି କିଛି ରୋଜଗାର କରନ୍ତି । ସେମାନଙ୍କ ସ୍ୱାସ୍ଥ୍ୟ ଭଲ ଅଛି । ଦୁର୍ଗା ପୂଜା ଓ ସରସ୍ୱତୀ ପୂଜା ବେଳକୁ ସେମାନଙ୍କୁ ଆର୍ଥିକ ସାହାଯ୍ୟ ଓ ପୋଷାକ ଦିଆଯାଇଥିଲା । ଜଣେ ସମାଜସେବୀ ସେମାନଙ୍କ ମଧ୍ୟରେ ରହି ସେମାନଙ୍କ ଭଲମନ୍ଦ ବୁଝି ଅବହିତ ଥାନ୍ତି । ଏ ଶରଣାର୍ଥୀମାନେ ବାରମ୍ବାର କ୍ୟାମ୍ପ ଛାଡ଼ି ପଳାଇଯାଉଥିବାରୁ ରାଜ୍ୟ-ସରକାର ଏମାନଙ୍କ ଥଇଥାନ ଭାର ନେବାକୁ ଅନିଚ୍ଛୁକ । ଭାରତ ସରକାର ଏମାନଙ୍କୁ ଅନ୍ୟତ୍ର ଥଇଥାନ କରିବେ ।

## ଘର ତୋଳା ଯୋଜନା

ଏ ବର୍ଷ ସରକାର ସ୍ଥିର କରିଛନ୍ତି ଯେ ଯଦି କୌଣସି ଶରଣାର୍ଥୀ ୧,୨୫୦ ଟଙ୍କା କରେ ଖର୍ଚ୍ଚ କରିବାକୁ ରାଜି ହୁଏ, ତାକୁ ଘର ତୋଳିବା ପାଇଁ ଟ୩,୨୫୦୲ ଋଣ ଦିଆଯିବ । କୌଣସି ଶରଣାର୍ଥୀ ଜଣେ ଟ୩,୫୦୦୲ ଖର୍ଚ୍ଚ କରିବାକୁ ରାଜି ହେଲେ ତାକୁ ଟ୭,୦୦୦୲ ଋଣ ଦିଆଯିବ । କେବଳ ଜଣେ ଶରଣାର୍ଥୀ ଏ ବର୍ଷ ଏ ଋଣ ପାଇଅଛି । ଆସନ୍ତା ବର୍ଷକୁ ଅନ୍ୟମାନେ ପାଇବେ ।

ସହର ଅଞ୍ଚଳମାନଙ୍କରେ ଥଇଥାନ କରାଯାଇଥିବା ଛୋଟ ବେପାରୀମାନଙ୍କ ମଧ୍ୟରୁ ଅନେକେ ବ୍ୟବସାୟରେ ଅଭିଜ୍ଞତା ଅଭାବରୁ କୃତକାର୍ଯ୍ୟ ହୋଇ ପାରୁ ନାହାନ୍ତି ।

୫୧ଟି ତନ୍ତୁବାୟ ପରିବାର ପ୍ରଥମେ ପ୍ରଥମେ ଭଲ ରୋଜଗାର କରୁଥିଲେ; କିନ୍ତୁ ଲୁଗା ବେପାର ମାନ୍ଦା ହେବାରୁ ସେମାନେ ଦୁଃସ୍ଥ ହୋଇ ପଡ଼ିଛନ୍ତି ।

କନ୍ଦପୁରରେ ଥିବା ୪ଟି ଜେଲେଟ ପରିବାର ସ୍ୱୟଂନିର୍ଭରଶୀଳ ହୋଇପାରିଛନ୍ତି ।

ଗଞ୍ଜାମରେ ୧୦ଟିଏ ଯାଦବପୁରିଆ ପରିବାର ଅଛି । ଅନ୍ୟଠାରେ ଥିବା ୨୧ଟି ପରିବାରଙ୍କୁ ହାରାହାରି ୨ ଏକର ହିସାବରେ ଜମି ଦିଆଯାଇଛି ।

କୃଷିପରିବାରମାନଙ୍କ ଆର୍ଥିକ ଅବସ୍ଥା ଖରାପ ଥିବାରୁ ସେମାନଙ୍କୁ ଚଳାଚଳ ଋଣ ଦେବାକୁ ଭାରତ ସରକାରଙ୍କୁ ଅନୁରୋଧ କରାଯାଇଛି ।

୧୪ ଜଣ ଶରଣାର୍ଥୀ ଛାତ୍ର ଉଚ୍ଚଶିକ୍ଷା ପାଇଁ ବୃତ୍ତି ପାଇଛନ୍ତି । ୭୮ ଜଣ ବୈଷୟିକ ଶିକ୍ଷା ପାଉଅଛନ୍ତି । ୧୮ ଜଣ ବାଳିକା ପୁରୀ ଜସନ୍ତ କୁମାରୀ ବିଧବାଶ୍ରମ ଓ ମହିଳା କୁଟୀରଶିଳ୍ପ ଶିକ୍ଷା ଆଶ୍ରମରେ ଟ୍ରେନିଂ ପାଉଅଛନ୍ତି ।

୧୯୫୩ ଡିସେମ୍ବର ସୁଦ୍ଧା ରାଜ୍ୟ ସରକାରଙ୍କ ବିଭିନ୍ନ ଯୋଜନା ସୂତ୍ରରେ ଶରଣାର୍ଥୀମାନଙ୍କୁ ୫୦·୯୭ ଲକ୍ଷ ଟଙ୍କା ଋଣ ଦିଆଯାଇଅଛି । ସରକାର ମୋଟରେ ସେମାନଙ୍କ ପାଇଁ ୬୧·୭ ଲକ୍ଷ ଟଙ୍କା ଖର୍ଚ୍ଚ କରିଛନ୍ତି ।

# ଆଇନ ଓ ଶୃଙ୍ଖଳା

ପୋଲିସ ଅପରାଧ ନିବାରଣ ଓ ଆଇନ ଓ ଶୃଙ୍ଖଳାରକ୍ଷା କରିବାରେ ସମ୍ୟକ୍ ତତ୍ପରତା ଦେଖାଇଥିଲେ । ଡକାୟତି, ନରହତ୍ୟା, ସିନ୍ଧ, ଚୋରି ଓ ଦଙ୍ଗା ପୂର୍ବବର୍ଷ ଓ ପୂର୍ବ ତିନବର୍ଷର ହାରାହାରି ହିସାବ ତୁଳନାରେ ବହୁତ କମିଯାଇଥିଲା । ଅନ୍ୟାନ୍ୟ ପ୍ରଦେଶରୁ ଆସି ଠକ ଓ ଦୁର୍ବୃତ୍ତମାନେ

ଲୋକଙ୍କୁ ଠକୁଥିଲେ ଓ ଉପଦ୍ରବ ମାଡ଼ି ପକାଉଥିଲେ । ସେମାନଙ୍କୁ ପୁରାପୁରି ଦମନ କରାଯାଇଥିଲା । ବାଲେଶ୍ୱରରେ ଧରା ହୋଇଥିବା ଡକାଏତ ଦଳଙ୍କର ବନ୍ଦୀ ହୋଇ ୪୪ ଜଣଙ୍କ ମଧ୍ୟରୁ ୩୩ ଜଣ ଦଣ୍ଡିତ ହୋଇଥିଲେ । ତିନିଜଣ ଯାବଜ୍ଜୀବନ ଦ୍ୱୀପାନ୍ତର ଦଣ୍ଡ ପାଇଥିଲେ ଏବଂ ଅନ୍ୟାନ୍ୟମାନେ ୧୦ରୁ ଆରମ୍ଭ କରି ୨ ବର୍ଷଯାଏ ଜେଲଦଣ୍ଡ ପାଇଥିଲେ । ଓଡ଼ିଶା ଦେଶରେ ଶାନ୍ତି ଓ ନିରାପତ୍ତା ବିରାଜମାନ ହେବାରୁ ଜଳସ୍ଥଳ ଓ ପ୍ରଗତିର ପଥ ନିଷ୍କଣ୍ଟକ ହୋଇଥିଲା ।

## ହରତାଳ

୧୧ଟେକ ଶିଳ୍ପାନୁଷ୍ଠାନରେ ହରତାଳ ଓ ଲକ ଅଉଟ ହୋଇଥିଲା । ଗ୍ରାମକୂଟରେ ସମାଜବିରୋଧୀ ଲୋକେ ଶ୍ରମିକଙ୍କୁ ମତାଇ ଯେଉଁ ହରତାଳ କରାଇ ଦେଉଥିଲେ, ପୁଲିସ ଯଥାସମୟରେ ତତ୍ପରତା ଦେଖାଇବାରେ ତାହା ଗୁରୁତର ଆକାର ଧରି ପାରି ନ ଥିଲା । ଏହାର ପୁନରାବୃତ୍ତି ଯେପରି ନ ହୁଏ ସେଥିପାଇଁ ବ୍ୟବସ୍ଥା କରାଯାଇଛି ।

## ଜନସେବା

ପୁଲିସ ମେଦିନୀପୁର ବନ୍ୟାରେ ଲୋକସେବା କରିଥିଲେ ଓ କଟକ ଲୋକଙ୍କ ହିତପାଇଁ କାଠଯୋଡ଼ି ପାଣିର ଗତି ଭିନ୍ନାଭିମୁଖୀ କରି ଦେଇଥିଲେ । ହିଂସ୍ର ଜନ୍ତୁଙ୍କୁ ହତ୍ୟା କରିବାରେ ଓ ବିପନ୍ନ ଲୋକଙ୍କ ଜୀବନ ରକ୍ଷାରେ ପୁଲିସ କୃତିତ୍ୱ ଦେଖାଇଥିଲେ ।

## ଫାୟାର ବ୍ରିଗେଡ

ଫାୟାର ବ୍ରିଗେଡ୍ ୨୦୦ ସ୍ଥାନରେ ତତ୍ପରତା ଦେଖାଇ ଲକ୍ଷ ଲକ୍ଷ ଟଙ୍କାର ସମ୍ପତ୍ତି ଅଗ୍ନିକାଣ୍ଡ-ମୁଖରୁ ରକ୍ଷା କରିଥିଲେ ।

ପୁଲିସ ସେମାନଙ୍କ ଜନସେବାମୂଳକ କାର୍ଯ୍ୟମାନଙ୍କଦ୍ୱାରା ସର୍ବତ୍ର ଜନପ୍ରିୟତା ଅର୍ଜନ କରିଥିଲେ ।

---

# ସାଧାରଣ ଶାସନ

ଅକ୍ଜିଲିଆରି ଟେରିଟୋରିଆଲ୍ ଆର୍ମିରେ ୬୮୦ ଜଣ ବେସାମରିକ ବ୍ୟକ୍ତି ସୈନ୍ୟଭାବରେ ତାଲିମ ହୋଇ ଅସ୍ତ୍ରଶସ୍ତ୍ର ବ୍ୟବହାର କୌଶଳ ଶିକ୍ଷା କରି ଅଛନ୍ତି । ଏମାନଙ୍କ ମଧ୍ୟରେ ସରକାରୀ କର୍ମଚାରୀ ମଧ୍ୟ ଅଛନ୍ତି । ସରକାର ଏମାନଙ୍କୁ ସବୁପ୍ରକାର ସୁବିଧା ଦେଇଅଛନ୍ତି ।

ସିନେମାମାନଙ୍କ ନିୟନ୍ତ୍ରଣ ପାଇଁ ବ୍ୟବସ୍ଥାପକ ସଭା "ଓଡ଼ିଶା ସିନେମା (ରେଗୁଲେସନ) ଆଇନ" କରି ଅଛନ୍ତି ।

ଶାସନ ବିଭାଗରୁ ବିଚାର ବିଭାଗକୁ ପୃଥକ କରିବା ନିମନ୍ତେ ଯୋଜନା ଦେବାକୁ ଯେଉଁ କମିଟି ନିଯୁକ୍ତ ହୋଇଥିଲା, ସେ କମିଟି ରିପୋର୍ଟ ଦେଇଅଛନ୍ତି ଓ ତାହା ସରକାରଙ୍କ ବିଚାରାଧୀନ ରହିଅଛି ।

ଆଇ.ଏ.ଏସ. ଅଫିସର ଓ ଆଇ.ପି. ଅଫିସର ପ୍ରାରମ୍ଭିକ ଟ୍ରେନିଙ୍ଗ ପାଇଁ ନିୟମାବଳୀ ପ୍ରଣୀତ ହୋଇଅଛି ।

ଓଡ଼ିଶା ସେକ୍ରେଟେରିଏଟ ସର୍ଭିସ ରୁଲସ୍ ପ୍ରସ୍ତୁତ ହୋଇଛି । ଏତଦ୍ୱାରା ସେକ୍ରେଟେରିଏଟ ଆସିଷ୍ଟାଣ୍ଟମାନଙ୍କ ମଧ୍ୟରୁ ଗେଜେଟେଡ୍ ଅଫିସର ନିଆଯିବେ । ସିଦ୍ଧାନ୍ତ ହୋଇଛି ଯେ କେବଳ ଏମାନେ ରେଜିଷ୍ଟ୍ରାର ପଦବୀ ପାଇବେ । ଆସିଷ୍ଟାଣ୍ଟ ସେକ୍ରେଟେରୀ ପଦର ମଧ୍ୟରୁ ଶତକଡ଼ା ୭୫ ଭାଗ ଏମାନେ ପାଇବେ । ଅଣ୍ଡର ସେକ୍ରେଟେରୀ ପଦଗୁଡ଼ିକର ଶତକଡ଼ା ୨୫ ଭାଗ ଓ ଡେପୁଟି ସେକ୍ରେଟେରୀ ପଦରୁ ଦୁଇଟି ଏମାନଙ୍କୁ ମିଳିବ ।

ଜମିଦାରୀ ଉଚ୍ଛେଦ ଓ ଗ୍ରାମପଞ୍ଚାୟତ ପ୍ରବର୍ତ୍ତନ ଯୋଗୁଁ ଅଧିକ ସଂଖ୍ୟାରେ ଅଫିସର ଦରକାର

ହୋଇଥିବାରୁ ସରକାର ଏଥିପାଇଁ ଇମର୍ଜେନ୍ସି ଆପଏଣ୍ଟମେଣ୍ଟ କରିବେ ।

ସରକାରୀ କର୍ମଚାରୀମାନଙ୍କୁ ସେମାନଙ୍କ ସର୍ବସ୍ୱ ସମ୍ପତ୍ତିର ତାଲିକା ଦାଖଲ କରିବାକୁ ହେବ ।

ପବ୍ଲିକ୍ ସର୍ଭିସ୍ କମିଶନଙ୍କ ସୁପାରିସ ବା ପ୍ରତିଯୋଗିତାମୂଳକ ପରୀକ୍ଷା ଛଡ଼ା ଏମ୍ପ୍ଲଏମେଣ୍ଟ ଏକ୍ସଚେଞ୍ଜଙ୍କ ସୁପାରିସରେ ମଧ୍ୟ କେତେକ ସ୍ଥଳରେ ଲୋକ ନିଯୁକ୍ତ କରାଯିବ ।

ସେକ୍ରେଟେରିଏଟର ଲୋଅର ଡିଭିଜନ ଆସିଷ୍ଟାଣ୍ଟ୍‌ମାନଙ୍କୁ ଏବେ ପବ୍ଲିକ୍ ସର୍ଭିସ୍ କମିସନ ନିଯୁକ୍ତ କରୁଅଛନ୍ତି । ହେଡ୍ସ ଅଫ୍ ଡିପାର୍ଟମେଣ୍ଟଙ୍କ ଅଫିସର ଲୋଅର ଡିଭିଜନ ଆସିଷ୍ଟାଣ୍ଟମାନେ ମଧ୍ୟ ଏହି ପ୍ରକାରେ ନିଯୁକ୍ତ ହେବେ ।

ଭାରତର ସୈନ୍ୟବାହିନୀମାନଙ୍କରୁ ଛଟେଇ ଯୋଗୁଁ ଚାକିରିରୁ ହଟାଇଥିବା ଲୋକଙ୍କୁ ସରକାର ଚାକିରି ଦେବାକୁ ବ୍ୟବସ୍ଥା କରୁଛନ୍ତି । କେତେକ ସ୍ଥଳରେ ସେମାନଙ୍କ ପାଇଁ ନିୟମ କୋହଳ କରି ଦିଆଯିବ ବୋଲି ସିଦ୍ଧାନ୍ତ ହୋଇଛି ।

ତପସିଲିମାନଙ୍କ ନିଯୁକ୍ତି ପାଇଁ ମଧ୍ୟ ଗୋଟିଏ କମିଟି ଗଢ଼ାଯାଇଛି ।

ଜେଲ ପରିଚାଳନାରେ ସଂସ୍କାର ଆଣିବା ନିମନ୍ତେ ସରକାର ନିଯୁକ୍ତ କରିଥିବା କମିଟି ୧୯୫୩ ଜୁଲାଇଠାରୁ କାର୍ଯ୍ୟ ଆରମ୍ଭ କରିଅଛନ୍ତି ।

ଜଣେ ଜେଲରଙ୍କୁ ଟ୍ରେନିଂ ପାଇଁ ଇଂଲଣ୍ଡକୁ ଓ ଦୁଇଜଣଙ୍କୁ ଉତ୍ତର ପ୍ରଦେଶକୁ ପଠା ଯାଇଅଛି ।

---

## ଆଦିବାସୀ ଓ ଗ୍ରାମମଙ୍ଗଳ

ପ୍ରଧାନତଃ ପଞ୍ଚବାର୍ଷିକ ଯୋଜନା ଅନୁଯାୟୀ ଆଦିବାସୀ ଓ ଗ୍ରାମମଙ୍ଗଳ ବିଭାଗ ତପସିଲଭୁକ୍ତ ସମ୍ପ୍ରଦାୟ ଓ ତପସିଲଭୁକ୍ତ ଜାତିମାନଙ୍କ ଅବସ୍ଥାର ଉନ୍ନତି ବିଧାନରେ ବ୍ୟସ୍ତ ହୋଇଅଛି । ୧୯୫୨-୫୩ରେ ଏ କାର୍ଯ୍ୟପାଇଁ ବଜେଟରେ ଟ ୨୯,୬୭,୩୧୫୵ ଓ ୧୯୫୩-୫୪ରେ ଟ ୩୦,୬୨,୫୦୧୵ର ବ୍ୟବସ୍ଥା କରାଯାଇଥିବାସ୍ଥଳେ ୧୯୫୪-୫୫ ବଜେଟରେ ଟ୪୪,୨୮,୭୬୬୵ ବ୍ୟବସ୍ଥା କରାଯାଇଛି ।

ତପସିଲଭୁକ୍ତ ସମ୍ପ୍ରଦାୟ ଓ ତପସିଲଭୁକ୍ତ ଜାତିମାନଙ୍କ ସର୍ବାଙ୍ଗୀନ ଉନ୍ନତି ନିମନ୍ତେ ନିମ୍ନଲିଖିତ କାର୍ଯ୍ୟମାନ କରାଯାଉଛି ।

**ଶିକ୍ଷା—ଆଶ୍ରମସ୍କୁଲ**

୧୯୫୩-୫୪ ଶେଷସୁଦ୍ଧା ୩୨ଟି ଆଶ୍ରମସ୍କୁଲ ଖୋଲାଯାଇଛି । ଏହି ୩୨ଟିରୁ ଗୋଟିଏ ବାଳିକା ଆଶ୍ରମସ୍କୁଲ । ୧୯୫୩-୫୪ରେ ଏ ସବୁ ଶିକ୍ଷାନୁଷ୍ଠାନରେ ଟ ୯,୦୦,୮୪୨୵ ଖର୍ଚ୍ଚ ହୋଇଛି । ୧୯୫୪-୫୫ରେ ଦୁଇଟି ବାଳକ ଆଶ୍ରମ ସ୍କୁଲ ଓ ଗୋଟିଏ ବାଳିକା ଆଶ୍ରମସ୍କୁଲ ଖୋଲାଯିବ ।

**ସେବାଶ୍ରମ**

୧୯୫୩-୫୪ରେ ୫୭୫ ସେବାଶ୍ରମ ଥିଲା ଏବଂ ସେ ସବୁରେ ୨୭ ହଜାର ଛାତ୍ରଛାତ୍ରୀ ଥିଲେ । ୧୯୫୪-୫୫ରେ ୫୦ଟି ନୂଆ ସେବାଶ୍ରମ ଖୋଲାଯିବ । ଏ ସବୁ ଶିକ୍ଷାନୁଷ୍ଠାନରେ ଚଳିତ ବର୍ଷ ଟ୬,୨୮,୪୧୨୵ ଖର୍ଚ୍ଚ ହୋଇଅଛି ।

**ଟ୍ରେନିଂ କେନ୍ଦ୍ର**

କୋରାପୁଟ, ଫୁଲବାଣୀ ଓ କେନ୍ଦୁଝରରେ ତିନୋଟି ଟ୍ରେନିଂ କେନ୍ଦ୍ର ରହିଛି । ଏଥିରେ ୪୧ଜଣ ଗ୍ରାମ ସେବକ ଓ ୮୨ ଜଣ ଗ୍ରାମ ଗାଇଡ୍ ଓ କର୍ମୀ ଟ୍ରେନିଂ ପାଉଅଛନ୍ତି ।

**ଛାତ୍ରବୃତ୍ତି**

ଛାତ୍ରମାନଙ୍କୁ ବୃତ୍ତିରୂପେ ଟ୪,୧୪,୦୦୦୵ ଦିଆଯାଇଥିଲା ଓ ପାଠ ଉପକରଣ କିଣିବା ପାଇଁ ଟ୮୬,୦୦୦୵ ଦିଆଯାଇଥିଲା ।

### ହସ୍ତକଳା ଉଦ୍ୟୋଗଶାଳା

ଦିଲ୍ଲୀର ହସ୍ତକଳା ଉଦ୍ୟୋଗଶାଳାରେ ଟ୍ରେନିଂ ପାଇବାକୁ ପଠା ଯାଇଥିବା ୧୦ ଜଣ ଛାତ୍ରଙ୍କ ମଧ୍ୟରୁ ୯ ଜଣ ଟ୍ରେନିଂ ପାଉଅଛନ୍ତି । ୧୯୫୪-୫୫ରେ ଅଧିକ ୧୦ ଜଣଙ୍କୁ ପଠାଯିବ ।

### ମହିଳାମାନଙ୍କ ଟ୍ରେନିଂ

ପୁରୀର ବସନ୍ତକୁମାରୀ ବିଧବାଶ୍ରମରେ ଜଣେ ସ୍ତ୍ରୀ ଟ୍ରେନିଂ ପାଉଅଛନ୍ତି । ୧୯୫୪-୫୫ରେ ଅଧିକ ଦୁଇ ଜଣଙ୍କୁ ପଠାଯିବ ।

ପ୍ରସିଦ୍ଧ ସମାଜସେବିକା ଶ୍ରୀମତୀ ମାଳତୀ ଚୌଧୁରୀଙ୍କ ପରିଚାଳିତ ଅନୁଗୁଳର ନାରୀମଙ୍ଗଳ ଟ୍ରେନିଂ କେନ୍ଦ୍ରରେ ନାରୀମାନଙ୍କୁ ସେବିକାରୂପେ ତାଲିମ ଦିଆଯାଉଛି । ସରକାର ୧୫ଟି ସମାଜସେବା କେନ୍ଦ୍ର ଖୋଲିଯାଉଛନ୍ତି ଓ ସେଥିରେ ଏ ଅନୁଷ୍ଠାନରୁ ତାଲିମ ପାଇ ୨୨ ଜଣ ସେବିକା ନିଯୁକ୍ତ ହୋଇଅଛନ୍ତି । ସେମାନେ ମଫସଲ ଅଞ୍ଚଳରେ ପ୍ରସୂତିମାନଙ୍କ ସେବା କରିବେ ଓ ନାରୀମାନଙ୍କ ମଧ୍ୟରେ ସମାଜମଙ୍ଗଳ ପ୍ରସ୍ତୁତ କରିବେ ।

### ବାଲେଶ୍ୱର ଟେକ୍‌ନିକାଲ ସ୍କୁଲ

ବାଲେଶ୍ୱର ଟେକ୍‌ନିକାଲ ସ୍କୁଲରେ ୬ ଜଣ ଆଦିବାସୀ ଶିକ୍ଷାର୍ଥୀଙ୍କୁ ସର୍ଟହାଣ୍ଡ, ଟାଇପିଙ୍ଗ ଓ ମେକାନିକ କାମ ଶିକ୍ଷା କରିବାକୁ ପଠାଯିବ ।

### ସ୍ୱତନ୍ତ୍ର ହଷ୍ଟେଲ

ଆଦିବାସୀ ଛାତ୍ରମାନଙ୍କ ଶିକ୍ଷାର ସୁବିଧାପାଇଁ ବରହମପୁରଠାରେ ସେମାନଙ୍କ ପାଇଁ ଗୋଟିଏ ସ୍ୱତନ୍ତ୍ର ହଷ୍ଟେଲ ଖୋଲାଯାଇଛି । ଭୁବନେଶ୍ୱର କାପିଟାଲ ହା: ଇ: ସ୍କୁଲରେ ଫୁଲବାଣୀର କେତେକ ଆଦିବାସୀ ଛାତ୍ର ପଢ଼ୁଅଛନ୍ତି । ଟ ୧୦୫୫୯ ବ୍ୟୟରେ ସେମାନଙ୍କ ପାଇଁ ଭୁବନେଶ୍ୱରରେ ଗୋଟିଏ ସ୍ୱତନ୍ତ୍ର ହଷ୍ଟେଲ ତିଆରି କରାଯାଉଛି ।

## ଆର୍ଥିକ ଉନ୍ନୟନ:—

### ବହୁମୁଖୀ ସମବାୟ ସମିତି

ଆଦିବାସୀମାନଙ୍କୁ ଶସ୍ତାରେ ଆବଶ୍ୟକୀୟ ଜିନିଷପତ୍ର ଯୋଗାଇବାକୁ ଓ ସେମାନଙ୍କୁ ମହାଜନମାନଙ୍କ ଶୋଷଣରୁ ରକ୍ଷା କରିବାକୁ ଆଗରୁ ବସାଯାଇଥିବା ୨୪ଟି ବହୁମୁଖୀ ସମବାୟ ସମିତି ଚାଲିଛି । ୧୯୫୩-୫୪ରେ ସେମାନେ ଟ୧୫,୭୮୯ ଲାଭ ପାଇଥିଲେ ।

### ଗ୍ରାମମଙ୍ଗଳ କେନ୍ଦ୍ର

ଆଦିବାସୀମାନଙ୍କ ମଧ୍ୟରେ ଉନ୍ନତ ଧରଣର କୃଷି, ବଗିଚାକାମ, କୁକୁଡ଼ା ପାଳନ, ଏଣ୍ଡିପୋକ ପାଳନ, ମହୁମାଛି ପାଳନ, କମ୍ପୋଷ୍ଟ ତିଆରି ପ୍ରଭୃତି ଶିକ୍ଷାଦେବା ନିମନ୍ତେ ଆଗରୁ ଖୋଲାଯାଇଥିବା ୫୭ଟି ଯାକ ଗ୍ରାମମଙ୍ଗଳକେନ୍ଦ୍ର କାର୍ଯ୍ୟକାରୀ ଅଛନ୍ତି ।

### ଗ୍ରାମର ମୁଖ୍ୟଙ୍କ ପାଇଁ ବନ୍ଧୁକ

ବନ୍ୟପଶୁଙ୍କ ମୁହଁରୁ ଫସଲ ରକ୍ଷା କରିବା ଉଦ୍ଦେଶ୍ୟରେ ଗ୍ରାମର ମୁଖ୍ୟମାନଙ୍କୁ ବନ୍ଧୁକ ଯୋଗାଇବାରେ ୧୯୫୩-୫୪ରେ ଟ ୩୦୦୦୯ ଖର୍ଚ୍ଚ ହୋଇଛି ।

### ମହୁମାଛି ପାଳନ

ଫୁଲବାଣୀ ଓ କୋରାପୁଟରେ ମହୁମାଛି ପାଳନ କାର୍ଯ୍ୟ ଚାଲିଛି । ୧୯୫୩-୫୪ରେ ମହୁମାଛି ବାକ୍ସମାନଙ୍କ ସାହାଯ୍ୟରେ ୪୨ ସେର ମହୁ ଉତ୍ପାଦିତ ହୋଇଥିଲା ।

### କୁକୁଡ଼ା ପାଳନ

କୁକୁଡ଼ା ପାଳନ ପାଇଁ ଖୋଲା ହୋଇଥିବା ୬ଟି କେନ୍ଦ୍ରରୁ ୧୯୫୩-୫୪ରେ ଟ୩୦୦୦୯ ଆୟ ହୋଇଥିଲା ।

### ତାଳଗୁଡ଼

କୋରାପୁଟରେ ତାଳଗୁଡ଼ ଉତ୍ପାଦନକୁ ସରକାର ଗୋଟିଏ କୁଟୀର ଶିଳ୍ପରୂପେ ପ୍ରବର୍ତ୍ତନ କରିଅଛନ୍ତି ।

### ରାସ୍ତାଘାଟ

ସରକାର ଅନୁନ୍ନତ ଅଞ୍ଚଳମାନଙ୍କରେ ରାସ୍ତା ତିଆରି ପାଇଁ ଲୋକଙ୍କୁ ମାଇଲ ପିଚ୍ଛା ଟ ୨୦୦୦୲ ହାରାହାରେ ସାହାଯ୍ୟ କରୁଛନ୍ତି । ଏ ବାବଦରେ ୧୯୫୩-୫୪ରେ ଟ୬୭,୩ ୦୲ ଖର୍ଚ୍ଚ ହୋଇଛି ।

### ବଳଦ କିଣିପାଇଁ ହାଟ

ଆଦିବାସୀମାନେ ଚାଷ ପାଇଁ ବଳଦ କିଣିବା ଉଦ୍ଦେଶ୍ୟରେ ବଳଦ କିଣି ପାଇଁ ୨୦ ଟି ହାଟ ଖୋଲାଯାଇଛି । ବଳଦ କିଣିବାକୁ ଆଦିବାସୀଙ୍କୁ ତଗାବ ଋଣ ଦିଆଯାଏ । ଏ ବାବଦରେ ଟ ୭୦୦୦୲ ମଞ୍ଜୁର ହୋଇଅଛି ।

### ଆଦିବାସୀମାନଙ୍କ ପାଇଁ ନୂତନ ବସତି

ଆଦିବାସୀମାନଙ୍କ ମଧ୍ୟରେ ପୋଡ଼ୁଚାଷ ବନ୍ଦ କରିବାକୁ ଓ ସେମାନଙ୍କୁ ଉନ୍ନତ ଜୀବନର ପ୍ରଣାଳୀରେ ଅଭ୍ୟସ୍ତ କରିବାକୁ ସରକାର ସେମାନଙ୍କୁ ନୂତନ ବସତିରେ ଆଣି ଅବସ୍ଥାନ କରାଇ ଅଛନ୍ତି । ୧୯୫୩-୫୪ ଶେଷରେ ୭୧ଟି ବସତି ସ୍ଥାପିତ ହୋଇଥିଲା ଏବଂ ୧୧୭୫ ଟି ପରିବାର ତହିଁରେ ଅବସ୍ଥାନ କରାଯାଇଥିଲେ । ସେମାନଙ୍କ ପାଇଁ ୧୯୫୨-୫୩ ଶେଷ ସୁଦ୍ଧା ୧୩୧୮ ଏକର ପଡ଼ିଆ ଜମି ଉଠିଆ କରାଯାଇଥିଲା । ପ୍ରତି ପରିବାରକୁ ୫ ରୁ ୧୦ ଏକର ଜମି ଦିଆଯାଇଛି । ପ୍ରତି ପରିବାରକୁ ଘର ତୋଳିବାକୁ ଟ ୨୫୦୲ କରି ସାହାଯ୍ୟ ଦିଆଯାଇଛି । ୧୯୫୩ ୫୪ରେ ଏ ଯୋଜନାରେ ଟ ୩,୨୯,୦୭୮୲ ଖର୍ଚ୍ଚ କରାଯାଇଛି । ଜଳସେଚନ ପାଇଁ ଟ୧୨୫୦୦୲ ସ୍ୱତନ୍ତ୍ର ଭାବରୂପେ ମଞ୍ଜୁର ହୋଇଅଛି ।

### ମକଦ୍ଦମାରେ ସାହାଯ୍ୟ

ଅଣଆଦିବାସୀମାନେ ଆଦିବାସୀମାନଙ୍କଠାରୁ ଅବୈଧ ଉପାୟରେ ଯେଉଁ ସବୁ ଜମି କିଣି ନେଇଛନ୍ତି, ତହିଁର ପୁନରୁଦ୍ଧାର ନିମନ୍ତେ ଏ. ଟି. ଆର., ଏଲ୍.ଟି. ଆଇନ ଅନୁସାରେ ଆଦିବାସୀମାନେ ଯେଉଁ ମକଦ୍ଦମା କରୁଛନ୍ତି ତହିଁର ଓକିଲ ଖର୍ଚ୍ଚ ସରକାର ବହନ କରୁଛନ୍ତି ।

### ଜଙ୍ଗଲ ଅଞ୍ଚଳ ଦୋକାନ

ପାରଳାଖେମଣ୍ଡି ଓ ବାଲିଗୁଡ଼ାରେ ଶବର ମାନଙ୍କ ପାଇଁ ୭ଟି ଜଙ୍ଗଲ ଅଞ୍ଚଳ ଦୋକାନ କାର୍ଯ୍ୟକାରୀ ରହିଅଛି ।

### ଆଦିବାସୀ ମଙ୍ଗଳପାଇଁ ସ୍ୱତନ୍ତ୍ର ଗ୍ରାଣ୍ଟ

ଗଞ୍ଜାମ ଓ କୋରାପୁଟର ମାଳଅଞ୍ଚଳର ଆଦିବାସୀମାନେ ଅତ୍ୟନ୍ତ ଅନୁନ୍ନତ । ସେମାନଙ୍କ ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା ଦରକାର ହୋଇ ବୁଝି ସରକାର ଜିଲା ମାଜିଷ୍ଟ୍ରେଟଙ୍କ ହାତରେ ଟ୧୦୦୦୦୲ ଦେଇ ଅଛନ୍ତି । ତହିଁରୁ ସେମାନେ କୁଟୀର ଶିଳ୍ପ ପାଇଁ ସାହାଯ୍ୟ ପାଇବେ ।

### ସ୍ୱାସ୍ଥ୍ୟ ଓ ଚିକିତ୍ସା

ମଫସଲ ଅଞ୍ଚଳରେ ପାନୀୟ ଜଳର ବ୍ୟବସ୍ଥା ପାଇଁ ସରକାର ଟ୧,୮୭,୦୦୦୲ ବ୍ୟୟ କରି ଅଛନ୍ତି । ଆଦିବାସୀଙ୍କ ମଧ୍ୟରେ ଔଷଧ ବାଣ୍ଟିବାପାଇଁ ଟ୨୧, ୨୭୨୲ ଗ୍ରାଣ୍ଟ ଦେଇ ଅଛନ୍ତି ।

### ସାମାଜିକ ଉନ୍ନୟନ—

#### ପହୁରୀ ଯାତ୍ରା

କେନ୍ଦୁଝର ଆଦିବାସୀଙ୍କ ପହୁରୀ ଯାତ୍ରା ପାଇଁ ସରକାର ଟ୫୦୦୲ ସାହାଯ୍ୟ ଦେଇଅଛନ୍ତି ।

#### ଅଗ୍ନିକାଣ୍ଡ ନିବାରଣ

ଗ୍ରାମମାନଙ୍କରେ ଘର ପୋଡ଼ି ନିବାରଣପାଇଁ ଫାୟାର ଫାଇଟିଙ୍ଗ ସ୍କ୍ୱାଡ଼ମାନ ସଙ୍ଗଠିତ ହୋଇଅଛି ।

## ପରିଭ୍ରମଣ ଓ ପ୍ରଦର୍ଶନୀ

ଆଦିବାସୀମାନଙ୍କ ଜ୍ଞାନର ପରିସର ବୃଦ୍ଧିପାଇଁ ସେମାନଙ୍କ ପରିଭ୍ରମଣ ଉଦ୍ଦେଶ୍ୟରେ ସରକାର ଟ୧୯୦୨୦୯ ଗ୍ରାଣ୍ଟ କରିଥିଲେ । ୧୦୭ ଜଣ ଆଦିବାସୀ ଓ ୪୪୩ ଜଣ ଆଦିବାସୀ ଯୁବ ପରିଭ୍ରମଣ ପାଇଁ ଭୁବନେଶ୍ୱର ପୁରୀ, କଟକ ଆସିଥିଲେ ।

ପୂର୍ବ ପରି ଏ ବର୍ଷ ସାଧାରଣତନ୍ତ୍ର ଦିବସରେ ଭୁବନେଶ୍ୱରରେ ଆଦିବାସୀ ମେଳା ଓ ପ୍ରଦର୍ଶନୀ ହୋଇଥିଲା । ରାଜ୍ୟପାଳ ପ୍ରଦର୍ଶନୀ ଉଦ୍‌ଘାଟନ କରିଥିଲେ । ପ୍ରଦର୍ଶନୀ ପାଇଁ ୮୦୦୦ ପ୍ରକାର ଜିନିଷ ଆସିଥିଲା । ପ୍ରଦର୍ଶନୀରେ ମୋଟ ଖର୍ଚ୍ଚ ଟ୧୩,୭୭୧ ହୋଇଥିଲା । ପ୍ରଦର୍ଶନୀ ଛଡା ଗୋଟିଏ କଳାକୁଞ୍ଜର ଆୟୋଜନ ହୋଇଥିଲା । ହଜାର ହଜାର ଦର୍ଶକ କଳାକୁଞ୍ଜ ଦେଖିଥିଲେ ।

## ବେସରକାରୀ ଅନୁଷ୍ଠାନମାନଙ୍କୁ ଗ୍ରାଣ୍ଟ

ଅନୁନ୍ନତ ଜାତିର ଲୋକଙ୍କ ମଧ୍ୟରେ ସେବାକାର୍ଯ୍ୟ କରିବାପାଇଁ ଗତବର୍ଷ ବେସରକାରୀ ଅନୁଷ୍ଠାନମାନଙ୍କୁ ଟ୧୦,୦୦୦ ଗ୍ରାଣ୍ଟ ଦିଆ ହୋଇଥିଲା । ଏ ବର୍ଷ ମଧ୍ୟ ଟ୧୦,୦୦୦ ଦିଆଯିବ ।

## ଅସ୍ପୃଶ୍ୟତା ନିବାରଣ ପାଇଁ ଗ୍ରାଣ୍ଟ

ଅସ୍ପୃଶ୍ୟତା ନିବାରଣ ସମ୍ବନ୍ଧୀୟ ବିବିଧ ଯୋଜନାକୁ କାର୍ଯ୍ୟରେ ପରିଣତ କରିବାପାଇଁ ୩ ଲକ୍ଷ ଟଙ୍କା ମଞ୍ଜୁର ହୋଇଥିଲା । ଏଥିରୁ କେନ୍ଦ୍ର ସରକାର ୨.୪୦ ଲକ୍ଷ ଟଙ୍କା ଦେଇଥିଲେ । ସ୍ୱପୃତ୍ତିଶ ସନ ଭୂଷଣ ଉପମନ୍ତ୍ରୀ ଶ୍ରୀ ଶାନ୍ତନୁକୁମାର ଦାସଙ୍କ ପରିଚାଳିତ "ଡିପ୍ରେସଡ଼ କ୍ଲାସ ଲିଗ"ଙ୍କ ହାତରେ ଏ ଟଙ୍କା ଦିଆଯାଇଥିଲା ।

## ପୂର୍ବତନ ଅପରାଧୀ ଜାତିଙ୍କ ଉନ୍ନତି

ପୂର୍ବେ ଯେଉଁ ଜାତିମାନେ ସ୍ୱେଚ୍ଛା ଉଜାସ୍ତ ଆଉ ଅପେୟ୍ୟ କରି ଦାଗୀ ହୋଇ ଅଛନ୍ତି, ସେମାନଙ୍କ ଉନ୍ନୟନ ପାଇଁ ସରକାର ଟ୪୭,୨୫୪ ମଞ୍ଜୁର କରିଥିଲେ ।

## ଟ୍ରାଇବାଲ ରିସର୍ଚ୍ଚ ବ୍ୟୁରୋ

ଆଦିବାସୀମାନଙ୍କ କୃଷି ଓ ପ୍ରଥା ଆଦି ବିଷୟରେ ଗବେଷଣା କରିବାକୁ ୧୯୫୨-୫୩ରୁ ଗୋଟିଏ ଟ୍ରାଇବାଲ ରିସର୍ଚ୍ଚ ବ୍ୟୁରୋ ଗଠିତ ହୋଇଅଛି । ୧୯୫୨-୫୩ରେ ଏ ବାବଦରେ ଟ୪୦,୯୩୯ ଖର୍ଚ୍ଚ ହୋଇଥିଲା ।

## ସରକାରୀ ଚାକିରିରେ ନିଯୁକ୍ତିର ହାର

ସରକାରୀ ଚାକିରିମାନଙ୍କରେ ତଫସିଲଭୁକ୍ତ ଜାତିର ପ୍ରାର୍ଥୀଙ୍କ ପାଇଁ ଶତକଡ଼ା ୧୮ ଓ ତଫସିଲଭୁକ୍ତ ଆଦିବାସୀର ପ୍ରାର୍ଥୀଙ୍କ ପାଇଁ ଶତକଡ଼ା ୨୦ ସୁରକ୍ଷିତ ହେବ । ତୃତୀୟ ଓ ଚତୁର୍ଥ ଶ୍ରେଣୀ ନୂଆ ସରକାରୀ ଚାକିରୀରୁ ସେମାନଙ୍କୁ ଶତକଡ଼ା ୫୦ ପ୍ରଦତ୍ତ ହେବ ।

## ଟ୍ରାଇବ୍‌ସ ଅଡ୍‌ଭିଜର୍ କାଉନ୍‌ସିଲ

ଏହାର ଗୋଟିଏ କମିଟି ୧୯୫୩ରେ ବସି ଆଦିବାସୀ ସମସ୍ୟାମାନଙ୍କର ଆଲୋଚନା କରିଥିଲା ଏବଂ କେତେକ ସୁପାରିସ କରିଥିଲା ।

---

# ଜମିଦାରି ଉଚ୍ଛେଦ

ଓଡ଼ିଶା ଜମିଦାରି ଉଚ୍ଛେଦ ଆଇନ ୨୭।୧୧।୫୨ ତାରିଖରୁ କାର୍ଯ୍ୟକାରୀ କରାଗଲା । ୧୯୫୨-୫୩ରେ ୩୬୭ଟି ଜମିଦାରି ସରକାର ହାତକୁ ନେଲେ । ଏଥିମଧ୍ୟରୁ ଓଡ଼ିଶାର ବୃହତ୍ତମ ଜମିଦାରି ଜୟପୁର

ଅନ୍ତର୍ଭୁକ୍ତ ଥିଲା । ଖାସ୍ କରାଯାଇଥିବା ଏ ଜମିଦାରୀ ମାନଙ୍କ ମଧ୍ୟରୁ ଅଧିକାଂଶ ଥିଲା ଚିରସ୍ଥାୟୀ ବନ୍ଦୋବସ୍ତ ମହାଲ । କିନ୍ତୁ ଯେଉଁସବୁ ଅସ୍ଥାୟୀ ବନ୍ଦୋବସ୍ତ ମହାଲ ଜ୍ୟେଷ୍ଠପୁତ୍ର ଉତ୍ତରାଧିକାର ( Law of Premogeniture) ଆଇନ ଦ୍ୱାରା ନିୟନ୍ତ୍ରିତ ହୋଇଥିଲା, ସେ ସବୁ ମଧ୍ୟ ଉଚ୍ଛେଦ କାର୍ଯ୍ୟକ୍ରମର ଅନ୍ତର୍ଭୁକ୍ତ ହେଲା । ଗଞ୍ଜାମ ଜିଲ୍ଲାର ଚିରସ୍ଥାୟୀ ବନ୍ଦୋବସ୍ତ ମହାଲମାନଙ୍କର ସ୍ୱତ୍ୱାଧିକାରୀମାନେ ଏଭଳି ଜମିଦାରୀ ଉଚ୍ଛେଦ ଆଇନ ବୈଧାନିକ ନୁହେ ବୋଲି ଅଭିଯୋଗ କରି ହାଇକୋର୍ଟରେ ମାଣ୍ଡାମସ ଦରଖାସ୍ତ ଦାଖଲ କଲେ, ତେଣୁ ସେମାନଙ୍କ ଜମିଦାରୀ ମାନଙ୍କର ସେ ବର୍ଷ ଉଚ୍ଛେଦ ହୋଇ ପାରିଲା ନାହିଁ ।

### ୧୯୫୩-୫୪ରେ ଉଲ୍ଲେଖଯୋଗ୍ୟ ଅଗ୍ରଗତି

୧୯୫୩-୫୪ ମସିହାରେ ଜମିଦାରୀ ଉଚ୍ଛେଦ କାର୍ଯ୍ୟର ଉଲ୍ଲେଖଯୋଗ୍ୟ ଅଗ୍ରଗତି ହୋଇଥିଲା ।

ଗଞ୍ଜାମର ଜମିଦାରମାନେ ହାଇକୋର୍ଟର ବିଚାର ବିରୁଦ୍ଧରେ ସୁପ୍ରିମକୋର୍ଟରେ ଯେଉଁ ଅପିଲ୍ କରିଥିଲେ ସୁପ୍ରିମକୋର୍ଟ ସେ ଅପିଲକୁ ଅଗ୍ରାହ୍ୟ କରିବାଫଳରେ ଗଞ୍ଜାମର ୪୯୮ଟି ଚିରସ୍ଥାୟୀ ବନ୍ଦୋବସ୍ତ ମହାଲ ୧।୬।୫୩ ତାରିଖ ଦିନ ଖାସ୍ କରାଗଲା । ୧୫।୬।୫୩ ତାରିଖ ଦିନ ପୁରୀ ଜିଲ୍ଲାର କେତେକ ଜାଗିରଦାରୀ, ଜମିଦାରୀ ମହାଲ ଏବଂ କୋଠଦେବତା ଜମିଦାରୀ ସରକାର ହାତକୁ ନେଇଥିଲେ । ମାସରେ କଟକ, ପୁରୀ ଓ ବାଲେଶ୍ୱର ଜିଲ୍ଲାର ଅବଶିଷ୍ଟ ଜମିଦାରୀ ଅଧିକ ଅଧିକ ହୋଇ ଖାସ୍ କରାଗଲା । ଚିରସ୍ଥାୟୀ ବନ୍ଦୋବସ୍ତ ମହାଲ ମଧ୍ୟରୁ କେବଳ କନିକା ୩୦।୧୧।୫୩ ପର୍ଯ୍ୟନ୍ତ ଖାସ ହୋଇ ପାରି ନ ଥିଲା, କାରଣ କନିକା ଜମିଦାରୀର ସ୍ୱତ୍ୱାଧିକାରୀଙ୍କ ପାହ୍ୟା ଗଡ଼ଜାତ ରାଜାଙ୍କ ପାହ୍ୟା ସଙ୍ଗେ ସମାନ ବୋଲି ଦାବି କରି ସେ ଦେୱାନୀ ମୋକଦ୍ଦମା ଦାଏର କରିଥିଲେ । ଶେଷରେ ୧।୫।୫୪ ତାରିଖରେ କଟକ ଜିଲ୍ଲାର ଅବଶିଷ୍ଟ ୮୦୫୪ଟି ଅସ୍ଥାୟୀ ବନ୍ଦୋବସ୍ତ ମହାଲ ଖାସ ହୋଇଥିଲା । ୧୭।୫।୫୪ରେ ସମ୍ବଲପୁରର ବରପାଲି ଜମିଦାରୀ ସରକାର ହାତକୁ ନେଲେ ।

ଏ ବର୍ଷ ସର୍ବମୋଟ ୧୬,୯୪୫ଟି ଜମିଦାରୀ (ଆନୁମାନିକ ୭୦୦୦ ବର୍ଗ ମାଇଲ) ସରକାର ହାତକୁ ନେଲେ । ସ୍ୱାଧୀନତାର ୭ମ ବର୍ଷରେ ରାଜସ୍ୱ ଦେଉଥିବା ପ୍ରାୟ ସମସ୍ତ ଜମିଦାରୀ ସରକାର ଖାସ କଲେ ।

### ନିଷ୍କର ଜାଗିରଦାରମାନଙ୍କ ଉଚ୍ଛେଦ

ବର୍ଷ ଶେଷ ସୁଦ୍ଧା କଟକ, ପୁରୀ ଓ ବାଲେଶ୍ୱରର ସମସ୍ତ ନିଷ୍କର ଜମିଦାରୀ ଓ ଗଞ୍ଜାମ ଓ କୋରାପୁଟ ଜିଲ୍ଲାର ଇନାମ ମହାଲ ଓ ସମଗ୍ର ରାଜ୍ୟର ଅସଂଖ୍ୟ ଉପ-ମଧ୍ୟସ୍ୱତ୍ୱାଧିକାରୀ ମହାଲ ଖାସ ହେବାକୁ ବସି ଥିଲା । ଏମାନଙ୍କ ମଧ୍ୟରୁ ଗଞ୍ଜାମ ଓ କୋରାପୁଟ ଜିଲ୍ଲାର ୫୦୯ଟି ଇନାମ ମହାଲ ୧୯୫୪ ଜୁଲାଇ ପହିଲା ଦିନ ଖାସ କରାଯାଇଅଛି ।

---

# ଶ୍ରମଦାନ

[ ଜିଲ୍ଲା ଲୋକସଂପର୍କ ଅଫିସର, କେନ୍ଦୁଝର ]

ଦାନ ଭାରତର ସଂସ୍କୃତି । ଭାରତର ନରପତି-ମାନେ ଦାନ ଲାଗି ପ୍ରସିଦ୍ଧି ଲାଭ କରିଥିଲେ । ରାମାୟଣ, ମହାଭାରତ, ଇତିହାସ ପୁରାଣରେ କେତେ ଦାନର କାହାଣୀ ଲିପିବଦ୍ଧ ହୋଇ ରହିଅଛି । ସେବକ ପର ପାଇଁ ପ୍ରାଣଦାନ କରିବାକୁ ସେତେବେଳେ କୁଣ୍ଠାବୋଧ ହେଉ ନ ଥିଲା । କଏ ଜାଣ



ଗୋବରଘାଟି ଆଶ୍ରମ ସ୍କୁଲ (କଟକ ଜିଲ୍ଲା) ନିକଟରେ
ପିଇବା ପାଣିର ବ୍ୟବସ୍ଥା ପାଇଁ ପୁଷ୍କରିଣୀ ଖନନ



ସ୍ୱାଧୀନତା ଦିବସ ପୁଲିସ ପ୍ୟାରେଡ୍‌ରେ ଭୂତପୂର୍ବ ରାଜ୍ୟପାଳ
ଶ୍ରୀ ସଇଦ୍ ଫଜଲ୍ ଅଲିଙ୍କ ସାଲ୍ୟୁଟ୍ ଗହଣ

ସ୍ୱାର୍ଥ, କିଏ ଦେଶ ପାଇଁ, କିଏ ବଂଶ ମର୍ଯ୍ୟାଦା ପାଇଁ, କିଏ ବା ଅସ୍ପୃଶ୍ୟଙ୍କ ସ୍ୱାର୍ଥ ଜୀବନକୁ ଆହୁତି ଦେଇଥିଲେ । ଏହା କମ୍ ଗୌରବର ବିଷୟ ନୁହେଁ !

ବର୍ତ୍ତମାନ କାଳର ଗତି ସ୍ୱତନ୍ତ୍ର । ଅର୍ଥାତ ସେ ପ୍ରକାର ଐକ୍ୟ ଦେଶରେ ନାହିଁ । ଆଜି ଦେଶବାସୀଙ୍କ ଭିତରେ ସେ ପ୍ରେରଣାର ଯଥେଷ୍ଟ ଅଭାବ । ତାହାର କାରଣ ଯାହା ହେଉ ପଛକେ; ଏବେ ଆତ୍ମସ୍ୱାର୍ଥ ପ୍ରତି ଦୃଷ୍ଟି ବେଶୀ ପଡ଼ୁଛି । ଖୁବ୍ ଅଳ୍ପସଂଖ୍ୟକ ବ୍ୟକ୍ତି ସମୂହ କଲ୍ୟାଣ ସାଧନରେ ବ୍ରତୀ ହେଉଛନ୍ତି । ଫଳରେ ଦେଶ ଓ ଜାତି ଯେତେ ଅଗ୍ରଗତି କରିବା ଆବଶ୍ୟକ, ତାହା ହୋଇ ପାରୁ ନାହିଁ ବା ହେବା ମଧ୍ୟ ଅସମ୍ଭବ ।

ଏ ତ ଗଲା ସମୂହ କଲ୍ୟାଣ ପ୍ରତି ଦସ୍ତୁର । ପୁଣି ପୂର୍ବର ପରିଶ୍ରମ ସଙ୍ଗେ ଏ ଯୁଗର ପରିଶ୍ରମ ମାତ୍ରା ତୁଳନା କରାଯାଉ । ଆମ ଦେଶ କୃଷିପ୍ରଧାନ ଦେଶ ଏବଂ ଏହାର ଅର୍ଥନୈତିକ ଉନ୍ନତି ବହୁ ପଛରେ ରହିଛି । ଦେଶ ଓ ଜାତିର ମାନଦଣ୍ଡ ଉଚ୍ଚକୋଟିର କରିବାକୁ ହେଲେ ଦେଶବାସୀଙ୍କୁ ବହୁତ ପରିଶ୍ରମ କରିବାକୁ ହେବ; କାରଣ ଶ୍ରମକାତରତା ଅବନତିର ଲକ୍ଷଣ ।

ଗାଁଗହଳରେ ଜନସାଧାରଣଙ୍କର ଏ ଦିଗ ପ୍ରତି ଦୃଷ୍ଟି ବିଶେଷ ଆକୃଷ୍ଟ ହୋଇଛି ବୋଲି କହି ହେବ ନାହିଁ । ପରିଶ୍ରମର ପ୍ରକୃତ ମୂଲ୍ୟ କେହି ନିରୂପଣ କରି ନାହିଁ । ହେଲେ ଏହା ଉପଲବ୍ଧି କରୁଛନ୍ତି ବା କରୁଛନ୍ତି କେତେ ଜଣ ? ଜନସାଧାରଣ ଅଯଥା ଅନେକ ସମୟ ନଷ୍ଟ କରୁଅଛନ୍ତି । ଅବଶ୍ୟ ସୀମା ଭିତରେ ରହି ଖେଳକୌତୁକ ଆମୋଦପ୍ରମୋଦ ଉପଭୋଗ କରିବାରେ କେହି ଅଭିଯୋଗ କରିବ ନାହିଁ । ମାତ୍ର ଅଯୌକ୍ତିକ ଭାବରେ ଆଳସ୍ୟର ବଶ ହେବା ଏବଂ ଶ୍ରମ ପ୍ରତି ଉଦାସୀନ ହେବା ଅବାଞ୍ଛନୀୟ । ସମାଜ ଓ ଜାତି ସହିତ ନିଜର ସଂପର୍କ ନ ବୁଝିଲେ ବ୍ୟକ୍ତିଗତ ଉଦାସୀନତା ସେ କ୍ଷତ-କାରକ ତାହା ବୁଝି ହେବ ନାହିଁ । ଯୁକ୍ତିତର୍କରେ କେହି କେହି କହିବାର ଶୁଣାଯାଏ "ଜଣେ କ'ଣ ଉଦାସୀନ ହେଲେ ଜାତି ନଷ୍ଟ ହୋଇ ଯାଉଛି" । ଏ ଯୁକ୍ତି ଅସଙ୍ଗତ, କାରଣ ଏହା ସ୍ୱତଃସିଦ୍ଧ ଯେ ବ୍ୟକ୍ତି-ମାନଙ୍କୁ ନେଇ ଜାତି ସଂଗଠିତ —ଯେପରି ବିନ୍ଦୁ ବିନ୍ଦୁ ହୋଇ ସମୁଦ୍ର ଓ ଅସଂଖ୍ୟ ବାଲିକଣା ହୋଇ ପର୍ବତ । ଅସଂଖ୍ୟ ବ୍ୟକ୍ତିର ଉଦାସୀନତା ଉପରେ ଜାତିର ଅକଲ୍ୟାଣ-ସ୍ତୂପ ନିର୍ମିତ ହୋଇଯାଏ ।

ଶ୍ରମପ୍ରତି ପରାଙ୍ମୁଖତା ଅତ୍ୟନ୍ତ ମନ୍ଦ ଆଦର୍ଶ । ଏହି ପରାଙ୍ମୁଖତା ଯୋଗୁଁ ଦାରିଦ୍ର୍ୟକୁ ବରଣ କରା-ଯାଉଛି । ଯେଉଁ ଦେଶର ଲୋକେ ଯେତେ ପରିଶ୍ରମୀ ସେ ଦେଶ ସେତେ ଉନ୍ନତ, ତାହା ପ୍ରତ୍ୟକ୍ଷଦର୍ଶୀ ମାନେ କହିବେ । ପୁଣି ପରମୁଖାପେକ୍ଷିତା ଦେଶକୁ ଗ୍ରାସ କରିବାକୁ ବସିଲାଣି । ସବୁବେଳେ ଆମ୍ଭେମାନେ ସାମାନ୍ୟ କାର୍ଯ୍ୟ ପାଇଁ ପର ଉପରେ ନିର୍ଭର କରିବାକୁ ଶିଖିଲୁଣି । ନିଜର କାମ ନିଜେ କରିବାକୁ କାହିଁକି ଯେ ଲଜ୍ଜା ବୋଧହୁଏ, ଏହା ସ୍ଥିର କରିବା କଠିନ । ଶୁଣାଯାଏ କେତେକ ଦେଶରେ ଗୃହରେ ଚାକର ରଖାଇ କାର୍ଯ୍ୟ କରାଇବା ପ୍ରଥା ନାହିଁ । ଶ୍ରମିକ, ଶିକ୍ଷକ, ଅଧ୍ୟାପକ, ଶାସନକର୍ତ୍ତା ନିଜେ ନିଜର କାର୍ଯ୍ୟ କରନ୍ତି । ଅର୍ଥାତ ସେ ଦେଶରେ ସମସ୍ତ ଶ୍ରମର ମୂଲ୍ୟ ବୁଝିଛନ୍ତି ଓ ତଦନୁସାରେ କାର୍ଯ୍ୟ ମଧ୍ୟ କରୁଛନ୍ତି ।

ସୌଭାଗ୍ୟର କଥା, ଏବେ ଆମ ଦେଶବାସୀଙ୍କ ଭିତରେ ଏ ଚେତନା ଜନ୍ମଲାଭ କରିଛି । ଦେଶର ନେତୃବୃନ୍ଦ ଏ ଦିଗରେ ଏକ ଅଭିଯାନ ଚଳାଇବାକୁ ମନସ୍ଥ କରି ଅଛନ୍ତି । ଶିକ୍ଷାଳୟମାନଙ୍କରେ ଏଥି ପୂର୍ବରୁ ଏକ ଶ୍ରମ ସପ୍ତାହ ସଫଳ ପାଳିତ ହୋଇଥିଲା । ପୁଣି ନ୍ୟାସନାଲ କ୍ୟାଡେଟ୍ କୋର ଛାତ୍ରଗଣ ଗ୍ରାମ-ଗୋଷ୍ଠୀ ଯୋଜନା ଅନ୍ତର୍ଭୁକ୍ତ ଅଞ୍ଚଳରେ ଶ୍ରମଦାନ କରି ଦୁଇ ମାଇଲ ଲମ୍ବର ଗୋଟିଏ ରାସ୍ତା ନିର୍ମାଣ କରି ପ୍ରଶଂସାପାତ୍ର ହୋଇଅଛନ୍ତି । ଏହାଛଡ଼ା ଉତ୍ସାହୀ

ଗ୍ରାମବାସୀଗଣ ଦେଉଁଛି ଏ ଭଳି କ୍ଷମତାର ପ୍ରୟୋଗ ଓ ଆଦର୍ଶ ଦେଖାଉଛନ୍ତି ।

ପ୍ରକୃତ ଭାବ ଦୃଷ୍ଟିକୋଣରେ ସେଉଁ ଉତ୍କଟ ସାର୍ବଜନୀ ଅନୁକରଣୀୟ ଭାବରେ ସବୁ ରହିଅଛି, ତାହା ତୁଳନାରେ ଏ ଉଦ୍ୟମ ଅତି ଅକିଞ୍ଚିତ୍କର । କିନ୍ତୁ ଏହି ଉଦ୍ୟମକୁ ପ୍ରଶଂସା ନ କରି ଚଳି ହେବ ନାହିଁ । ଏହା ଉତ୍କୃଷ୍ଟ ଭବିଷ୍ୟତର ସୂଚନା ଦେଉଛି । ସ୍ଥାନେ ସ୍ଥାନେ ଏହାର ବ୍ୟାପକତା ପାଇଁ ଚେଷ୍ଟା ଆବଶ୍ୟକ ।

ବର୍ତ୍ତମାନ ରାଜ୍ୟ ସରକାରଙ୍କ ଆନୁକୂଲ୍ୟରେ ବହୁତ ଯୋଜନା କାର୍ଯ୍ୟକାରୀ କରାଯାଉଅଛି ଏବଂ ସ୍ୱାଧୀନତା ପାଇବା ପରେ ଗାଁଗହଳ ପ୍ରତି ସମସ୍ତଙ୍କର ଦୃଷ୍ଟି ଆକୃଷ୍ଟ ହୋଇଛି । ମାତ୍ର କେବଳ ଏହି ସରକାରୀ ଚେଷ୍ଟା ଦେଖି ସନ୍ତୁଷ୍ଟ ହୋଇ ରହିଲେ ଅଗ୍ରଗତି କରିବା ଅସମ୍ଭବ; କାରଣ ଯେ କୌଣସି ସଂଖ୍ୟା ସମସ୍ତଙ୍କୁ ଲୋଡ଼ା ପଣ ସବୁ । ପୁଣି ସେଉଁ ସବୁ କ୍ଷୁଦ୍ର କ୍ଷୁଦ୍ର ଯୋଜନା ଗ୍ରାମବାସୀଙ୍କ ଉଦ୍ୟମରେ କରି ହୋଇ ପାରିବ, ତାହା ପାଇଁ ହାତ ସାଉଁ ବସିବା ଉଚିତ ନୁହେଁ । ପ୍ରତ୍ୟେକ ଗ୍ରାମ ନିଜର ଯୋଜନା ଯାହା ଅନେକ କାର୍ଯ୍ୟକାରୀ କରି ପାରିବ, ତାହାପାଇଁ ଏକ କର୍ମପନ୍ଥା ସ୍ଥିର କରି ଉଦ୍ୟମ କରିବା ବିଧେୟ । ଏଥିପାଇଁ ଗ୍ରାମର ଏକତା ସେପରି ଆବଶ୍ୟକ, ମନ ଓ ପ୍ରେରଣା ସେହିପରି ଓତଃପ୍ରୋତ ହେବା ବିଧେୟ । ଗ୍ରାମର ସ୍ୱାସ୍ଥ୍ୟ-ବିଧାନ ବିଷୟରେ ଅନେକ କ୍ଷୁଦ୍ର ଯୋଜନା ସହଜରେ କାର୍ଯ୍ୟକାରୀ କରାଯାଇ ପାରିବ । କ୍ଷୁଦ୍ର ସ୍ୱାସ୍ଥ୍ୟରକ୍ଷୀର ସଙ୍କୋଚର. ଗ୍ରାମର କ୍ଷୁଦ୍ର ସସ୍ତା ଔଷଧ, ମେଲେରିଆ ରୋଗରୁ ରକ୍ଷା ପାଇବା ପାଇଁ ଉପାୟ ସ୍ପ୍ରେ କରିବା ଆଦି ଜଣକ ପକ୍ଷରେ କେତେ ସହଜ ଏବଂ ଠିଆହୋଇପାରେ, ମାତ୍ର ଗ୍ରାମବାସୀଙ୍କ ସମ୍ମିଳିତ ଚେଷ୍ଟାରେ ଏହା ଏକ ସପ୍ତାହରୁ ବେଶୀ ସମୟ ନେବ ନାହିଁ । ଏ ବିଷୟରେ ଧ୍ୟାନଦିଆ ସର୍ବପ୍ରଥମେ ଆବଶ୍ୟକ ।

ଏବେ ଗାଁରେ ପ୍ରକୃତ ନେତୃତ୍ୱର ଅଭାବ ପରିଲକ୍ଷିତ ହେଉଛି । ଏହି ନେତୃତ୍ୱ ଅଭାବରେ ଗ୍ରାମବାସୀ ଭିନ୍ନ ଭିନ୍ନ ଦଳରେ ବିଭକ୍ତ ହେଉଛନ୍ତି । କାରଣ ନେତୃତ୍ୱର ସୁଯୋଗ ଗ୍ରହଣ କରିବାକୁ ଯାଇ ଅନେକେ ଗ୍ରାମସ୍ୱାର୍ଥରୁ ବଳି ଦେଇ ଆତ୍ମସ୍ୱାର୍ଥ ଲୋଭରେ ବ୍ୟସ୍ତ । ଫଳରେ ନେତୃତ୍ୱ ଉପରେ ବିଶ୍ୱାସ ବା ଆସ୍ଥା ରହୁନାହିଁ—ନ ହେବା ମଧ୍ୟ ସ୍ୱାଭାବିକ । ଏ ବିଷୟରେ ନେତୃବୃନ୍ଦ ତଥା ଶିକ୍ଷିତ ଲୋକଙ୍କୁ ଅନେକ ଚେଷ୍ଟା କରିବାକୁ ପଡ଼ିବ । ବିବେକ ଜ୍ଞାନୀ—ମୂର୍ଖ ହେଲେହେଁ ସମସ୍ତଙ୍କର ଅଛି । ପୁଣି ଭୁଲବଶ ନ ହେଲେହେଁ କେବେ ନା କେବେ ଜନ-ସାଧାରଣ ନୂତନ ବା ପ୍ରକୃତକୁ ବିଶ୍ୱାସ କରିବେ । ଗ୍ରାମରେ ସେଥିପାଇଁ ଗୋଟିଏ ଯୋଜନା ହେବା ଆବଶ୍ୟକ । ଏ ବିଷୟରେ କର୍ତ୍ତବ୍ୟ ସ୍ତ୍ରୀ ପୁରୁଷ, ଯୁବକଯୁବତୀ ସମସ୍ତଙ୍କର ଅଛି ଓ ରହିବା ଉଚିତ । ସମୂହ ଉଦ୍ୟମରେ ଜଗତରେ କୌଣସି ସାଧିତ ନ ହୋଇ ପାରିବ ତାହା କିଛି ହେବ ନାହିଁ । ଦେଶ ଓ ଜାତି ଏହି ଉଦ୍ୟମକୁ ଅପେକ୍ଷା କରି ରହିଅଛି ।



# କଟକ ବଜାର୍ ଅବସ୍ଥା

[ ୧୯୫୪ ଜୁନ ]

## ଚାଉଳ ଓ ଧାନ

ପୂର୍ବବର୍ତ୍ତୀ ମାସରେ ୧୮୭୬.୭୭୭ ଟନ୍ ଧାନ ଓ ୨୭.୫୩୨ ଟନ୍ ଚାଉଳ ସଂଗୃହୀତ ହୋଇଥିବାସ୍ଥଳେ ଗତ ମାସରେ (୧୭ । ୫ । ୫୪ରୁ ୧୫ । ୬ । ୫୪) ୧୬୭୩.୯ ଟନ୍ ଧାନ ଓ ୧୩୪.୬୩୯ ଟନ୍ ଚାଉଳ ସଂଗୃହୀତ ହୋଇଅଛି । ଏ ସମସ୍ତ ମଧ୍ୟରେ ମୋଟରେ ୩୬୬.୩୫୧ ଟନ୍ ଧାନ ଓ ୧୭୯୬.୭୬ ଟନ୍ ଚାଉଳ ବାହାରକୁ ରପ୍ତାନି ହୋଇଥିଲା । ଉଠା କଣ୍ଟ୍ରୋଲରେ ମାସର ଦ୍ୱିତୀୟ ଅର୍ଦ୍ଧରେ ଚାଉଳ ବଢ଼ି ହେବାରୁ ଡିଙ୍ଗିଭୁଟା ମୋଟା ଚାଉଳ ଦର ମହଣରେ ଟ ୦।୵ ଓ ସରୁ ଚାଉଳ ଦର ମହଣରେ ଟ ୦।୵ କମିଥିଲା । ଜଟଣୀ ମହଣ (ମୋଟା) ଟ୧୬୯ ଓ ସରୁ ଟ ୧୮୵ ହୋଇଥିଲା ।

## ଗହମ ଓ ଗହମଜାତ ଜିନିଷ

କଣ୍ଟ୍ରୋଲ ଉଠିଯିବାର ୭ ମାସ ଭିତରେ ଗହମର ଅଭାବ ତୀବ୍ର ଭାବରେ ଅନୁଭୂତ ହୋଇଥିଲା । ମୋଟ ୬୩୦୦ ମହଣ ଗହମ ଆମଦାନି କରାଯାଇଥିଲା । ସେଥିରୁ ୧୯୫୭ ମହଣ ବାଲେଶ୍ୱର ଓ କେ.ଓଁଝରକୁ ପଠାଯାଇଥିଲା । ଯାଜପୁର ରୋଡ଼ରୁ କିଛି ଦେଶୀ ଗହମ ଆଣାଯାଇ ଅଭାବ ଦୂର କରାଯାଇଥିଲା । ମାସର ତୃତୀୟ ସପ୍ତାହରେ ବାଲେଶ୍ୱରୀ ମହଣର ଦାମ ଟ୧୭୯ ହୋଇଥିଲା ।

ଗହମ ଅଭାବ ଯୋଗୁଁ ଅଧିକ ପରିମାଣରେ ଅଟା ଓ ସୁଜି ଆମଦାନି କରାଯାଇଥିଲା । ୮୪୯ ମହଣ ଅଟା ଓ ୧୦୦ ମହଣ ସୁଜି କଟକ ବଜାରକୁ ଆସିଥିଲା । ୪୪୦ ମହଣ ମଇଦା ଅଣାଯାଇଥିଲା । ପୂର୍ବ ମାସରେ ମଇଦା ଦାମ ମହଣକୁ ଟ ୨୨୵ ଥିବାସ୍ଥଳେ ଏ ମାସରେ ମହଣକୁ ଟ୨୨୧ ହୋଇଥିଲା । ଖୁଚୁରା ଦରରେ ଅଟା ସେର (ଜଟଣୀ) ଟ ୦୵ ରୁ ଟ ୦୵ ଓ ସୁଜି ସେର (ଜଟଣୀ) ଟ ୧୵ ରୁ ଟ ୧ । ଥିଲା ।

## ଡାଲି

କୋଳଥ, ଖେସାରି, ମୁଗ ଓ ହରଡ଼ ଦାମ୍ କମି ଥିଲା । ବାହାରୁ ଆମଦାନି କରାଯାଉଥିବା ବୁଟ, ହରଡ଼ ଓ ମସୁରର ଦାମ ମଧ୍ୟ କମି ଥିଲା ।

ବିରି, ମୁଗ, କୋଳଥ, ଖେସାରି, ବୁଟ, ବୁଟ-ଡାଲି, ହରଡ଼ ଡାଲି ଓ ମସୁର ଡାଲି ଯଥାକ୍ରମେ ୫.୨, ୧୨.୩, ୯.୫, ୮.୭, ୧୧.୧, ୧୫.୨, ୭.୫ ଓ ୪.୫ କମିଥିଲା ।

ବିରି ୨୭୨ ମହଣ, ବୁଟ ୭୪ ମହଣ, ବିରି ଡାଲି ୩୮ ମହଣ, ମୁଗଡାଲି ୨୫୦୭ ମହଣ, ହରଡ଼ ଡାଲି ୧୫୮ ମହଣ ଓ ବୁଟଡାଲି ୧୧୧ ମହଣ ରପ୍ତାନି ହୋଇଥିଲା । ବିରିଡାଲି ୯୭୦ ମହଣ, ହରଡ଼ ଡାଲି ୫୪୦୩ ମହଣ ଓ ବୁଟଡାଲି ୪୬୩୭ ମହଣ ଆମଦାନି ହୋଇଥିଲା ।

## ତେଲବୀଜ

ନଡ଼ିଆତେଲକୁ ଛାଡ଼ି ଅନ୍ୟାନ୍ୟ ସବୁ ତେଲର ଦାମ କମିଥିଲା । ୧୧୮୩୧ ମହଣ ସୋରିଷତେଲ, ୯୧୬୨ ମହଣ ଚିନାବାଦାମ ତେଲ, ୧୧୯ ମହଣ

ଜଡ଼ାତେଲ ଓ ୨୬୩୫ ମହଣ ନଡ଼ିଆତେଲ ଆମଦାନୀ କରାଯାଇଥିଲା ।

## ଚିନି ଓ ଗୁଡ଼

ପୂର୍ବ ମାସରେ ଚିନି ମହଣ ଟ ୩୮୪ ଥିବାସ୍ଥଳେ ଚଳିତ ମାସରେ ଟ ୩୧୯ ହୋଇଥିଲା । ସ୍ଥାନୀ ୨୧୫୮ ମହଣ ଚିନି ଆମଦାନୀ କରାଯାଇଥିଲା ଏବଂ ଭିତର ଅଞ୍ଚଳମାନଙ୍କୁ ୨୩୪ ମହଣ ରପ୍ତାନୀ କରାଯାଇଥିଲା । ଅନକାପଲ୍ଲୀ, ବାଟେଲ ଓ ବ୍ରହ୍ମପୁରରୁ ୩୯୨ ମହଣ ଗୁଡ଼ ଆମଦାନୀ କରାଯାଇଥିଲା । ଅନକାପଲ୍ଲୀ ଓ ଦେଶୀଗୁଡ଼ ଦାମ୍ ଗତ ମାସରେ ମହଣ ପ୍ରତି ଟ ୩୦୯ ଓ ଟ ୨୮୯ ଥିବାସ୍ଥଳେ ଚଳିତ ମାସରେ ଟ ୨୮୯ ଓ ଟ ୨୬୯ ହୋଇଅଛି ।

## ଲୁଣ

ଏ ମାସରେ ୧୮,୬୫୫ ମହଣ ଲୁଣ ଆମଦାନୀ କରାଯାଇଥିଲା । କଟକୀ ମହଣ ଦାମ ଟ ୦। ବଢ଼ିଥିଲା । ଧଳା ଲୁଣ ମହଣ ଟ ୨୷ ଓ ନାଲି ଲୁଣ ମହଣ ଟ ୨୷ ଥିଲା ।

## ମସଲା

ଗତମାସରେ ମୋଟଚୂର କଟକୀ ମହଣ ଟ ୨୨୯ ଥିବାସ୍ଥଳେ ଏ ମାସରେ ଟ ୧୯୭ ହୋଇଗଲା । ଧନିଆ ଦାମ ମଧ୍ୟ ମହଣକେ ଟ ୨ କମିଥିଲା, ଟ ୩୦ ସ୍ଥଳରେ ଟ ୨୮ ହେଲା । ଲଙ୍କାମରିଚ, ହଳଦୀ, ଜିରା ଓ ଗୁଆ ଦାମ ମଧ୍ୟ କିଛି କିଛି କମିଥିଲା । ପୂର୍ବ ମାସରେ ଏ ସବୁର ଯଥାକ୍ରମେ କଟକୀ ମହଣ ଦାମ ଥିଲା ଟ ୧୦୦, ଟ ୬୨, ଟ ୧୦୫ ଓ ଟ ୧୫୫ । ଉତ୍କଳକୁ ନିମ୍ନଲିଖିତମତେ ମସଲାମାନଙ୍କର ଆମଦାନୀ ଓ ରପ୍ତାନୀ ହୋଇଥିଲା ।

| ମସଲା | ଆମଦାନୀ (ବାଲେଶ୍ୱର ମହଣ) | ରପ୍ତାନୀ (ବାଲେଶ୍ୱର ମହଣ) |
|---|---|---|
| ଲଙ୍କାମରିଚ | ୧୧'୭ | ୧୩୩ |
| ମୋଟଚୂର | ୮୪ (ସିଗାରେଟ) | ୯୦ (ଗୁଡ଼ାଖୁ) |
| " ... | ୪୪୧୯ | — |
| ଜିରା ... | ୮୭ | — |
| ଧନିଆ ... | ୨୨୦୨ | — |
| ହଳଦୀ ... | ୬୭୭ | — |
| ଗୁଆ ... | ୬୭୪୮ | ୨୩୫ |

## ଫଳ ଓ ପନିପରିବା

ଆଳୁ ମହଣ ଟ ୧୮ ଥିଲା । ମୋଟ ଆମଦାନୀ ଅଳୁ ୫୧୨୪ ମହଣ ଥିଲା । ମେଟ୍ଟୁପାଲ୍ୟମ ଅଳୁ କଟକୀ ମହଣ ଟ ୨୨ ଓ ନଇନିତାଲ ଅଳୁ କଟକୀ ମହଣ ଟ ୨୪ ଥିଲା । ନାସିକରୁ କଟକୀ ମହଣ ଟ ୧୦ ଦରରେ ୨୦୨୦ ମହଣ ପିଆଜ ଆମଦାନୀ ହୋଇଥିଲା ।

ଦେଶୀ ଆମ୍ବ ସବୁ ଆସିଥିଲା । ଦକ୍ଷିଣୀ କଲମିଆମ୍ବ ୫୮୭୦୦ ଝୁଡ଼ି ଆମଦାନୀ ହୋଇଥିଲା ଓ ୪୭୦୦ ଝୁଡ଼ି ପୁରୀ ଓ ଅନ୍ୟାନ୍ୟ ସ୍ଥାନକୁ ରପ୍ତାନୀ କରାଯାଇଥିଲା ।

## ମାଛ

ମଧ୍ୟମ ଶ୍ରେଣୀର ମାଛ ଦାମ କଟକୀ ସେର ଟ ୨୷ ଥିଲା ।

## ଝୋଟ

ଗତମାସରେ ଝୋଟ ମହଣ ଟ ୨୨୴ ଥିବାସ୍ଥଳେ ଏ ମାସରେ ଟ ୨୦ ହୋଇଥିଲା । କଟକରୁ କଲିକତା, ଗୁଣ୍ଡୁର ଓ ଅନ୍ୟାନ୍ୟ ସ୍ଥାନକୁ ୨୫୯୧୪ ମହଣ ଝୋଟ ରପ୍ତାନୀ ହୋଇଥିଲା ।

## ଚମଡ଼ା

୧୫୪୪ ମହଣ ଚମଡ଼ା ରପ୍ତାନୀ ହୋଇଥିଲା । ଗୋରୁ ଚମଡ଼ାର ଦାମ ଟ ୦।୵ କଲ ଓ ମଇଁଷି ଚମଡ଼ା ଟ ୦୵ କଲ ବଢ଼ିଥିଲା ।



# ଓଡ଼ିଶାରେ ସମବାୟ ଆନ୍ଦୋଳନର ଅଗ୍ରଗତି

[ ୧୯୫୪ ଜୁନ ୭ ତାରିଖଠାରୁ ୨୭ ତାରିଖ ମଧ୍ୟରେ ରେଜିଷ୍ଟ୍ରିଭୁକ୍ତ ହୋଇଥିବା ସମବାୟ ଅନୁଷ୍ଠାନମାନଙ୍କ ବିବରଣ ]

ବର୍ତ୍ତମାନ ସମବାୟର ଯୁଗ । ଦେଶର ସର୍ବାଙ୍ଗୀନ ଉନ୍ନୟନ ନିମନ୍ତେ ସମବାୟ ଏ ପର୍ଯ୍ୟନ୍ତ ଯେ କେତେ କାର୍ଯ୍ୟ କରିଅଛି, ତାହା କହିବା ବାହୁଲ୍ୟ ମାତ୍ର । ଲୋକେ ସମବାୟର ଉପକାରିତା ଫଳରେ ନିଜର ସମବାୟ ସୂତ୍ରରେ ନିଜକୁ ସଙ୍ଗଠିତ କରିବା ପାଇଁ ଦେଶର ସର୍ବତ୍ର ସଚେଷ୍ଟ ହୋଇ ଉଠିଅଛନ୍ତି । ନିମ୍ନଲିଖିତ ତାଲିକାରୁ ଏହା ସୁସ୍ପଷ୍ଟ ପ୍ରତିପନ୍ନ ହେବ ।

୧ । ଚଗିରିଆ ମାଣପୁର ସମବାୟ ଷ୍ଟୋର୍ସ ସମିତି, ଲିମିଟେଡ୍; ପୋ: ଅ: ଚଗିରିଆ, କଟକ ଜିଲ୍ଲା ।
୨ । ବଳସ୍ୱା ଗୃହଲକ୍ଷ୍ମୀ ସମବାୟ ସମିତି, ପୋ: ଅ: ଓ ଜିଲ୍ଲା ବାଲେଶ୍ୱର ।
୩ । ଭୁଷ ଗୃହଲକ୍ଷ୍ମୀ ସମବାୟ ସମିତି, ପୋ: ଅ: ଓ ଜିଲ୍ଲା ବାଲେଶ୍ୱର ।
୪ । ସିମୋରପାଟଣା ଉଦ୍‌ବାସ୍ତୁ ସମବାୟ ସମିତି, ପୋ: ଅ: ବାଲିଅନ୍ତା, ଜିଲ୍ଲା ପୁରୀ ।
୫ । କେସାଇବାହାଲ ଉଦ୍‌ବାସ୍ତୁ ସମବାୟ ସମିତି, ପୋ: ଅ: କେସାଇବାହାଲ, ଜିଲ୍ଲା ସମ୍ବଲପୁର ।
୬ । ଝଁସର ଉଦ୍‌ବାସ୍ତୁ ସମବାୟ ସମିତି, ପୋ: ଅ: କୁସମୀ, ଜିଲ୍ଲା ସମ୍ବଲପୁର ।
୭ । ଉଣ୍ଡାହେଲି ଉଦ୍‌ବାସ୍ତୁ ସମବାୟ ସମିତି, ପୋ: ଅ: ଜୟପୁର, ଜିଲ୍ଲା କୋରାପୁଟ ।
୮ । ବଲଦିଆ ଉଦ୍‌ବାସ୍ତୁ ସମବାୟ ସମିତି, ପୋ: ଅ: ମୁରୁଡ଼ା, ଜିଲ୍ଲା ବାଲେଶ୍ୱର ।
୯ । ସମ୍ବଲପୁର ବସ୍ତ୍ରାଳୟ ହାତତନ୍ତ ସମବାୟ ସମିତି, ପୋ: ଅ: ବରଗଡ଼, ଜିଲ୍ଲା ସମ୍ବଲପୁର ।
୧୦ । ଉତ୍ତମର୍ଗପିଲ ସମବାୟ ସମିତି, ଉତ୍ତମଗାଣିତ, ପୋ: ଅ: ଘୁଣ୍ଟିଶୋ, ଜିଲ୍ଲା ପୁରୀ ।
୧୧ । ଜାମରସୁଆଁ ସମବାୟ ସମିତି, ଜାମରସୁଆଁ, ପୋ: ଅ: ଗଡ଼କଣ୍ଡ, ଜିଲ୍ଲା ପୁରୀ ।
୧୨ । କୃଷ୍ଣପ୍ରସାଦ କୃଷି ସମବାୟ ସମିତି, କୃଷ୍ଣପ୍ରସାଦ, ପୋ: ଅ: ଇଟାମାଟି, ଜିଲ୍ଲା ପୁରୀ ।
୧୩ । ସାନସିଙ୍ଗଇପୁର ସମବାୟ ସମିତି, ସାନସିଙ୍ଗଇପୁର, ପୋ: ଅ: ବାଣପୁର, ଜିଲ୍ଲା ପୁରୀ ।
୧୪ । ଖାଙ୍ଗରସିଙ୍ଗ କୃଷି ସମବାୟ ସମିତି, ଖାଙ୍ଗରସିଙ୍ଗ, ପୋ: ଅ: ଭୋଟଲୋ, ଜିଲ୍ଲା ପୁରୀ ।
୧୫ । କରମାଙ୍ଗ ପାଟଗାଁ କୃଷି ସମବାୟ ସମିତି, କରମାଙ୍ଗ ପାଟ, ପୋ: ଅ: ନୂଆହାଟ, ଜିଲ୍ଲା ପୁରୀ ।
୧୬ । ବେଣ୍ଟ୍ୟାରପୁର କୃଷି ସମବାୟ ସମିତି, ବେଣ୍ଟ୍ୟାରପୁର, ପୋ: ଅ: ସାରଙ୍ଗଧରପୁର, ଜିଲ୍ଲା ପୁରୀ ।
୧୭ । କେନ୍ଦୁଆପଦା କୃଷି ସମବାୟ ସମିତି, କେନ୍ଦୁଆପଦା, ପୋ: ଅ: କଳାପଥର, ଜିଲ୍ଲା ପୁରୀ ।
୧୮ । ତଳମାଳ କୃଷି ସମବାୟ ସମିତି, ତଳମାଳ, ପୋ: ଅ: ଖଜୁରିଆ, ଜିଲ୍ଲା ପୁରୀ ।

୧୯ । ଭଣ୍ଡିଗ୍ରାମ ସମବାୟ ସମିତି, ଭଣ୍ଡିଗ୍ରାମ, ପୋ: ଅ: କମାପଡ଼ା, ଜିଲ୍ଲା ପୁରୀ ।
୨୦ । ବନମୂଣ୍ଡା କୃଷି ସମବାୟ ସମିତି, ବନମୂଣ୍ଡା, ପୋ: ଅ: ବଲୁ, ଜିଲ୍ଲା ପୁରୀ ।
୨୧ । ଦୋଉଲ୍ଲାପୁର କୃଷି ସମବାୟ ସମିତି ଦୋଉଲ୍ଲାପୁର, ପୋ: ଅ: ଖଜୁରିଆ, ଜିଲ୍ଲା ପୁରୀ ।
୨୨ । ମୌଜ ଫତେଲଚନ୍ଦନପୁର କୃଷି ସମବାୟ ସମିତି, ମୌଜ ହିଂଗୁଳଚନ୍ଦନପୁର, ପୋ: ଅ: ନଗଜାବପୁର, ଜିଲ୍ଲା ପୁରୀ
୨୩ । ଖରଖଣ୍ଡ ସମବାୟ ସମିତି, ଖରଖଣ୍ଡ, ପୋ: ଅ: ଗୋପ, ଜିଲ୍ଲା ପୁରୀ ।
୨୪ । ହରିପୁର କୃଷି ସମବାୟ ସମିତି, ହରିପୁର ଓ ଦଶ ସାମନ୍ତପୁର, ପୋ: ଅ. ସିକୋ, ଜିଲ୍ଲା ପୁରୀ ।
୨୫ । ଅଲୁଅ କୃଷି ସମବାୟ ସମିତି, ଅଲୁଅ, ପୋ: ଅ: ଅଲୁଅ ଡହି, ଜିଲ୍ଲା ପୁରୀ ।
୨୬ । ନନ୍ଦପୁର କୃଷି ସମବାୟ ସମିତି, ନନ୍ଦପୁର, ପୋ: ଅ: ବାଜପୁର, ଜିଲ୍ଲା ପୁରୀ ।
୨୭ । ଅଣସର ସମବାୟ ସମିତି, ଅଣସର, ପୋ: ଅ: କଂଟିଣୀ, ଜିଲ୍ଲା ପୁରୀ ।
୨୮ । ଜଗବନ୍ଧୁ କୃଷି ସମବାୟ ସମିତି, ଅଣସଣ୍ଡ, ପୋ: ଅ: କମାପଡ଼ା, ଜିଲ୍ଲା ପୁରୀ ।
୨୯ । ଭଡଲୀବାଣ କୃଷି ସମବାୟ ସମିତି, ଭଦଲୀବାଣ, ପୋ: ଅ: କମାପଡ଼ା, ଜିଲ୍ଲା ପୁରୀ ।
୩୦ । ଭଣ୍ଡାଙ୍କକୁଦା କୃଷି ସମବାୟ ସମିତି, ଭଣ୍ଡାଙ୍କକୁଦା, ପୋ: ଅ: ଛତାବର, ଜିଲ୍ଲା ପୁରୀ ।
୩୧ । ଡମ୍ବର କୃଷି ସମବାୟ ସମିତି, ଡମ୍ବର, ପୋ: ଅ: ଲଠିଆପଡ଼ା, ଜିଲ୍ଲା ପୁରୀ ।
୩୨ । ଭୁହଁଆ କୃଷି ଋଣ ସମବାୟ ସମିତି, ଭେଲୁହଁଆ, ପୋ. ଅ: ବଡ଼ବୋଡ଼ାସମ୍ବର, ପୋ: ଅ. ସମ୍ବଲପୁର ।
୩୩ । ଅମଲପଲି କୃଷି ଋଣ ସମବାୟ ସମିତି, ଅମଲପଲି, ପୋ: ଅ: ସୁକୁଡ଼ା, ଜିଲ୍ଲା ସମ୍ବଲପୁର ।
୩୪ । ବାଲଗାଁ କୃଷି ଋଣ ସମବାୟ ସମିତି, ବାଲଗାଁ, ପୋ: ଅ: ସାରମହାବଳପୁର, ଜିଲ୍ଲା ବଲାଙ୍ଗୀର ।
୩୫ । ଛଦାଗୁଡ଼ା କୃଷିଋଣ ସମବାୟ ସମିତି,(ଅନଲିମିଟେଡ଼)ଛଦାଗୁଡ଼, ପୋ:ଅ: ଦେଓଗାଁ, ଜିଲ୍ଲା କଳାହାଣ୍ଡି
୩୬ । ଜୁନାନି କୃଷିଋଣ ସମବାୟ ସମିତି, (ଅନଲିମିଟେଡ଼) ଜୁନାନି, ପୋ: ଅ: ଖଡ଼ିଆଳ, ଜିଲ୍ଲା କଳାହାଣ୍ଡି ।
୩୭ । ଫରସରା କୃଷିଋଣ ସମବାୟ ସମିତି (ଅନଲିମିଟେଡ଼), ଫରସରା, ପୋ:ଅ: ବଡ଼େଦନ, ଜିଲ୍ଲା କଳାହାଣ୍ଡି
୩୮ । ସରଭାଡ଼ କୃଷିଋଣ ସମବାୟ ସମିତି, ସରଭାଡ଼, ପୋ: ଅ: ଖଡ଼ିଆଳ, ଜିଲ୍ଲା କଳାହାଣ୍ଡି ।
୩୯ । ଯୋଗପୁର କୃଷିଋଣ ସମବାୟ ସମିତି, ଯୋଗପୁର, ପୋ: ଅ: ଖଡ଼ିଆଳ, ଜିଲ୍ଲା କଳାହାଣ୍ଡି ।
୪୦ । ପାଡାଲପଡ଼ା କୃଷି ଋଣ ସମବାୟ ସମିତି, ପାଡାଲପଡ଼ା, ପୋ: ଅ: ବଡ଼େଦନ, ଜିଲ୍ଲା କଳାହାଣ୍ଡି ।
୪୧ । ଖାଲସାବଦଳ କୃଷିଋଣ ସମବାୟ ସମିତି(ଅନଲିମିଟେଡ଼) ଖାଲସାବଦଳ ପୋ: ଅ: ଟୁକ୍ଲା ଜିଲ୍ଲା କଳାହାଣ୍ଡି
୪୨ । ବଡ଼େଦନ କୃଷି ଋଣ ସମବାୟ ସମିତି (ଅନଲିମିଟେଡ଼) ବଡ଼େଦନ, ପୋ. ଅ. ଦେଓଗାଁ, ଜିଲ୍ଲା କଳାହାଣ୍ଡି
୪୩ । ଭଙ୍ଗସର କୃଷି ଋଣ ସମବାୟ ସମିତି, ଭଙ୍ଗସର, ପୋ. ଅ. ଖଡ଼ିଆଳ, ଜିଲ୍ଲା କଳାହାଣ୍ଡି ।
୪୪ । ପିକୁଆଁ କୃଷି ଋଣ ସମବାୟ ସମିତି, ପିକୁଆଁ, ପୋ. ଅ. ଖଡ଼ିଆଳ, ଜିଲ୍ଲା କଳାହାଣ୍ଡି ।
୪୫ । ଭୋଲବନଡ଼ା କୃଷି ସମବାୟ ସମିତି, ଭୋଲବନଡ଼ା, ପୋ. ଅ. ଖଡ଼ିଆଳ, ଜିଲ୍ଲା କଳାହାଣ୍ଡି ।
୪୬ । ଥାକପେଲେ କୃଷି ସମବାୟ ସମିତି, ଥାକପଲ, ପୋ. ଅ. ଚମ୍ପୁଆ, ଜିଲ୍ଲା କେନ୍ଦୁଝର ।
୪୭ । ଧୂଷର କୃଷି ସମବାୟ ସମିତି, ଧୂଷର, ପୋ. ଅ. କୁମଦା, ଜିଲ୍ଲା କଳାହାଣ୍ଡି ।
୪୮ । ପାଡରଗେଲେ କୃଷି ସମବାୟ ସମିତି, ପାଡରଗେଲେ, ପୋ. ଅ: ଇଞ୍ଜଲା, ଜିଲ୍ଲା କଳାହାଣ୍ଡି ।
୪୯ । ଲୁଲୁଣ୍ଡା କୃଷି ସମବାୟ ସମିତି, ପାଡରଗେଲେ, ପୋ. ଅ. ସାଇନମହାବଜପୁର, ଜିଲ୍ଲା ବଲାଙ୍ଗୀର ।
୫୦ । ସିଆଉଦା କୃଷି ସମବାୟ ସମିତି, ଲୁଲୁଣ୍ଡା, ପୋ: ଅ: ଇଡବ, ଜିଲ୍ଲା ବଲାଙ୍ଗୀର ।
ସିଆଉଦା, ପୋ. ଅ: ଆନନ୍ଦପୁର, ଜିଲ୍ଲା କେନ୍ଦୁଝର ।

୫୧ । ସଦାଶିବ କୃଷି ସମବାୟ ସମିତି, ସଦାଶିବ, ପୋ: ଅ: ଆନନ୍ଦପୁର, ଜିଲ୍ଲା କେନ୍ଦୁଝର ।

୫୨ । ପଟିଲେ ଧାନଗୋଲା ସମବାୟ ସମିତି, ପଟିଲେ, ପୋ:ଅ: ଘଣ୍ଟାଗଡ଼ା, ଜିଲ୍ଲା କେନ୍ଦୁଝର ।

୫୩ । ଝିଗୁଲ ଟାଙ୍ଗିର କୃଷି ସମବାୟ ସମିତି, ଝିଗୁଲ ଟାଙ୍ଗିର, ପୋ. ଅ. ସ୍ୱଜନଗର, ଜିଲ୍ଲା କେନ୍ଦୁଝର ।

୫୪ । ବାନନ୍ଦା କୃଷି ସମବାୟ ସମିତି, ବାନନ୍ଦା, ପୋ. ଅ. ଚଣ୍ଡୀପଦା, ଜିଲ୍ଲା କେନ୍ଦୁଝର ।

୫୫ । ଭୁଲଦା କୃଷି ସମବାୟ ସମିତି, ଭୁଲଦା, ପୋ: ଅ. ବ୍ରଜନଗର, ଜିଲ୍ଲା କେନ୍ଦୁଝର ।

୫୬ । ଲୁମୁଣ୍ଡା କୃଷି ସମବାୟ ସମିତି, ଲୁମୁଣ୍ଡା, ପୋ: ଅ: ବଡ଼ଗାଁ, ଜିଲ୍ଲା ସମ୍ବଲପୁର ।

୫୭ । ଢୋଡ଼ାସମ୍ବର ଖେଇରପଲି କୃଷି ସମବାୟ ସମିତି, ଖେଇରପଲି, ପୋ. ଅ. ଉଇପିଟଲେଟ, ଜିଲ୍ଲା ସମ୍ବଲପୁର

୫୮ । ଝିଲିମୁଣ୍ଡା ଟଙ୍କା ଓ ଧାନ ଋଣ କୃଷି ସମବାୟ ସମିତି, ଝିଲିମୁଣ୍ଡା, ପୋ: ଅ ବରଗୁଡ଼ା ।

୫୯ । ଗଣ୍ଡଜରୁମ ଟଙ୍କା ଓ ଧାନ ଋଣ କୃଷି ସମବାୟ ସମିତି, ଗଣ୍ଡଜରୁମ, ପୋ: ଅ. ପିଆଲି ଖଣ୍ଡାଦହା, ଜିଲ୍ଲା ସମ୍ବଲପୁର ।

୬୦ । କଣ୍ଡରା ଧାନଗୋଲା ସମବାୟ ସମିତି, କ[illegible], ପୋ. ଅ. ଗରୁଆ, ଜିଲ୍ଲା ମୟୂରଭଞ୍ଜ ।

୬୧ । ଦଲକ କୃଷି ସମବାୟ ସମିତି , ଦଲକ; ପୋ: ଅ: ସଙ୍ଗିରଦା, ଜିଲା ସମ୍ବଲପୁର ।

୬୨ । ଚୁଲଧର କୃଷି ସମବାୟ ସମିତି, ଚୁଲଧର, ପୋ. ଅ: ଅତାବିରା, ଜିଲ୍ଲା ସମ୍ବଲପୁର ।

୬୩ । ସର୍କଦା କୃଷି ସମବାୟ ସମିତି, ସର୍କଦା, ପୋ. ଅ. ସର୍କଦା, ଜିଲ୍ଲା ସମ୍ବଲପୁର ।

୬୪ । ମହାଦେବପଲ୍ଲୀ କୃଷି ସମବାୟ ସମିତି, ମହାଦେବପଲି, ପୋ: ଅ: କନକା, ଜିଲ୍ଲା ବଲାଙ୍ଗୀର ।

୬୫ । ନାଇକେନପଲି କୃଷି ସମବାୟ ସମିତି, ନାଇକେନପଲି, ପୋ: ଅ: ରାମପୁର, ଜିଲ୍ଲା ବଲାଙ୍ଗୀର ।

୬୬ । ଭୀମଟିକରା କୃଷି ସମବାୟ ସମିତି, ଭୀମଟିକରା, ପୋ. ଅ. ରାମପୁର, ଜିଲ୍ଲା ବଲାଙ୍ଗୀର ।

୬୭ । ଟେଣ୍ଟୁପଲି କୃଷି ସମବାୟ ସମିତି, ଟେଣ୍ଟୁପଲି, ପୋ ଅ: କନ୍ଦ୍ରା ଜିଲ୍ଲା, ବଲାଙ୍ଗୀର ।

୬୮ । କେଶପଲି କୃଷି ସମବାୟ ସମିତି, କେଶପଲି, ପୋ: ନେଲୁ. ଜିଲ୍ଲା ବଲାଙ୍ଗୀର ।

୬୯ । ସାରଙ୍ଗପଲି କୃଷି ସମବାୟ ସମିତି, ସାରଙ୍ଗପଲି, ପୋ, ଅ: କନ୍କା, ଜିଲ୍ଲା ବଲାଙ୍ଗୀର ।

୭୦ । ମୃଦଙ୍ଗ କୃଷି ସମବାୟ ସମିତି, ମୃଦଙ୍ଗ, ପୋ: ଅ: ରାମପୁର, ଜିଲ୍ଲା କଳାହାଣ୍ଡି ।

୭୧ । ବଢ଼ଖମାର କୃଷି ସମବାୟ ସମିତି, ବଢ଼ଖମାର, ପୋ: ଅ: ସୁଦପଡ଼ା, ଜିଲ୍ଲା ବଲାଙ୍ଗୀର ।

୭୨ । ଲୁଗୁଡ଼ା କୃଷି ସମବାୟ ସମିତି, କୋଣାଇଗଡ଼, ପୋ: ଅ: କୋଣାଇଗଡ଼, ଜିଲ୍ଲା ସୁନ୍ଦରଗଡ଼ ।



# ସାମୟିକ ସମାଚାର

## ସମାଜମଙ୍ଗଳ ଅନୁଷ୍ଠାନମାନଙ୍କୁ ସାହାଯ୍ୟ

**ଦେଶରେ ଏଭଳି ଅନୁଷ୍ଠାନମାନଙ୍କୁ ସାହାଯ୍ୟ କରିବା ବିଷୟରେ ପରାମର୍ଶ ଦେବାପାଇଁ ରାଜ୍ୟମଙ୍ଗଳ ପରାମର୍ଶଦାତା ବୋର୍ଡ଼ ଗଠିତ ହେବ ।**

ଯୋଜନା କମିସନଙ୍କ ପରାମର୍ଶ ଅନୁସାରେ ଭାରତ ସରକାର ୧୯୫୩ ଅଗଷ୍ଟ ମାସଠାରୁ କେନ୍ଦ୍ର ସମାଜମଙ୍ଗଳ ବୋର୍ଡ଼ ସ୍ଥାପନ କରିଛନ୍ତି । ଦେଶର ଯେଉଁ ସ୍ୱେଚ୍ଛା ସେବାମୂଳକ ସମାଜମଙ୍ଗଳ ଅନୁଷ୍ଠାନମାନେ ସାହାଯ୍ୟ ଲୋଡ଼ନ୍ତି, ସେମାନଙ୍କୁ ସାହାଯ୍ୟ ଓ ନିର୍ଦ୍ଦେଶ ଦେବା ଏ ବୋର୍ଡ଼ର ଉଦ୍ଦେଶ୍ୟ । ଏ ଉଦ୍ଦେଶ୍ୟରେ ପଞ୍ଚବାର୍ଷିକ ଯୋଜନାରେ ୪ କୋଟି ଟଙ୍କା ବ୍ୟବସ୍ଥା କରାଯାଇଛି ।

ସାଧାରଣ ଭାବରେ ସମାଜମଙ୍ଗଳ କାର୍ଯ୍ୟକଳାପର ଉନ୍ନୟନ ପାଇଁ ସାହାଯ୍ୟ କରିବା ଓ ବିଶେଷ ଭାବରେ ନିମ୍ନଲିଖିତ ବ୍ୟବସ୍ଥା କରିବା କେନ୍ଦ୍ର ସମାଜମଙ୍ଗଳ ବୋର୍ଡ଼ର କାର୍ଯ୍ୟ:—

(କ) ସମାଜମଙ୍ଗଳ ଅନୁଷ୍ଠାନମାନଙ୍କର କଣ ଦରକାର, ତାହା ଜାଣିବା ପାଇଁ ଗୋଟିଏ ଅନୁସନ୍ଧାନ କରାଇବା;

(ଖ) ସାହାଯ୍ୟପ୍ରାପ୍ତ ଅନୁଷ୍ଠାନମାନଙ୍କର କାର୍ଯ୍ୟକ୍ରମ ଓ ଯୋଜନାର ମୂଲ୍ୟ ଅବଧାରଣ କରିବା;

(ଗ) କେନ୍ଦ୍ର ଓ ରାଜ୍ୟସରକାରଙ୍କ ବିଭିନ୍ନ ବିଭାଗମାନେ ସମାଜମଙ୍ଗଳ କାର୍ଯ୍ୟକଳାପ ପାଇଁ ଯେଉଁ ସବୁ ସାହାଯ୍ୟ ଦେଉଛନ୍ତି ସେ ସବୁ ଭିତରେ ସମନ୍ୱୟ ସ୍ଥାପନ କରିବା;

(ଘ) ଯେଉଁଠି ସମାଜମଙ୍ଗଳ ଅନୁଷ୍ଠାନ ନାହିଁ, ସେଠାରେ ସ୍ୱେଚ୍ଛା ସେବା ଭିତ୍ତିରେ ସେସବୁକୁ ସ୍ଥାପନ କରିବା ଦିଗରେ ସାହାଯ୍ୟ କରିବା; ଏବଂ

(ଙ) ଦରକାର ହେଲେ ଉପଯୁକ୍ତ ସଂଗଠନ ବା ଅନୁଷ୍ଠାନମାନଙ୍କୁ ବୋର୍ଡ଼ ଦ୍ୱାରା ନିର୍ଦ୍ଧାରିତ ହୋଇଥିବା ସର୍ତ୍ତରେ ଆର୍ଥିକ ସାହାଯ୍ୟ ଦେବା ।

### ୨ । ସାଧାରଣ ନୀତି

ଏଭଳି ସ୍ୱେଚ୍ଛା ସେବା ସଂଗଠନମାନଙ୍କୁ ସାହାଯ୍ୟ ଦେବାରେ କେନ୍ଦ୍ର ସମାଜମଙ୍ଗଳ ବୋର୍ଡ଼ ନିମ୍ନଲିଖିତ ମତ ଦ୍ୱାରା ଚାଳିତ ହୁଅନ୍ତି ।

(୧) ପ୍ରଧାନତଃ ମଙ୍ଗଳବିଧାନ କାର୍ଯ୍ୟକ୍ରମର ଉନ୍ନୟନ କରିବା ସକାଶେ ସାହାଯ୍ୟ ଦିଆଯାଏ । ଜମି କିଣିବା ଓ ଘର ତିଆରି କରିବା ଆଦି ଉଦ୍ଦେଶ୍ୟରେ ସବୁଠାରୁ କମ୍ ଗ୍ରାଣ୍ଟ ଦିଆଯିବ ବୋଲି ସ୍ଥିର କରାଯାଇଛି ।

(୨) ବୋର୍ଡ଼ଙ୍କ ଦ୍ୱାରା ଅନୁମୋଦିତ ହୋଇଥିବା କାର୍ଯ୍ୟକ୍ରମରେ ଯାହା ଖର୍ଚ୍ଚ ଲାଗିବ, ତାହା ସମାନ ସମାନ ପରିମାଣରେ ବହନ କରିବାକୁ ହେବ; ଅର୍ଥାତ ଖର୍ଚ୍ଚର ଶତକଡ଼ା ୫୦ ଭାଗ ବୋର୍ଡ଼ ବହନ କରିବେ ଓ ଅନ୍ୟ ୫୦ ଭାଗ ସ୍ଥାନୀୟ ଦାନ ଦ୍ୱାରା ବହନ କରିବାକୁ ହେବ—

ଏହି ସର୍ତ୍ତରେ ଗ୍ରାଣ୍ଟ ଦିଆଯାଏ । ନିମ୍ନଲିଖିତ ସୂତ୍ରରୁ ସ୍ଥାୟୀ ଦାନ ମିଳିପାରେ:—

(କ) କୌଣସି ଅନୁଷ୍ଠାନ ଦ୍ୱାରା ଦାନ;

(ଖ) ସ୍ୱୟଂଶାସିତ ଅନୁଷ୍ଠାନ ଦ୍ୱାରା ଦାନ; ଓ

(ଗ) ରାଜ୍ୟସରକାରଙ୍କ ଦାନ ।

ବୋର୍ଡ଼ ଗୋଟିଏ ଅନୁଷ୍ଠାନକୁ ବର୍ଷକୁ ସାଧାରଣତଃ ଟ୧୦,୦୦୦ ପର୍ଯ୍ୟନ୍ତ ଦାନ ଦେଇ ପାରିବେ; କିନ୍ତୁ ବିଶେଷ ବିଶେଷ ସ୍ଥଳରେ ସର୍ବୋଚ୍ଚ ଦାନର ପରିମାଣ ଟ୧୫୦୦୦ ପର୍ଯ୍ୟନ୍ତ ବଢ଼ାଇ ଦିଆଯାଇପାରେ ।

(୷) ଗ୍ରାଣ୍ଟ ଦେଲାବେଳେ କାର୍ଯ୍ୟକ୍ରମରୁ କି ଉପକାର ମିଳିବ, ତାହାର ଆକାର ପ୍ରକାର ଓ ପରିମାଣ, ସଂଗଠନମାନଙ୍କର ପ୍ରଚଳିତ ଆୟ ଓ ଭବିଷ୍ୟତ-ମୂଳକ ସମ୍ଭାବନା ବିଷୟ ବିଚାର କରାଯାଏ ।

(।) ପ୍ରଚଳିତ ଲୋକହିତକର ବ୍ୟବସ୍ଥାକୁ ସ୍ଥୂଳ ଭୁଷିବା ପାଇଁ ଏ କାର୍ଯ୍ୟକ୍ରମ ଅନୁସାରେ ଦିଆ ଯାଉଥିବା ସାହାଯ୍ୟ ଯେତେ ଅଭିପ୍ରେତ ନୁହେଁ, ସେ ଗୁଡ଼ିକ ପୁନର୍ଗଠିତ କରିବା ଓ ଉନ୍ନତ କରିବା ନିମନ୍ତେ ଏବଂ ଯେଉଁଠି ସମାଜମଙ୍ଗଳ କାର୍ଯ୍ୟ ପାଇଁ ଜରୁରୀ ଆବଶ୍ୟକତା ରହିଛି ଅଥଚ ସେଥିପାଇଁ କୌଣସି ସଂଗଠନ ନାହିଁ, ସେଠାରେ ନୂଆ ସଂଗଠନ ସ୍ଥାପନ କରିବା ନିମନ୍ତେ ଏହା ଯେତେ ଅଭିପ୍ରେତ ।

(।୵) ବୋର୍ଡ଼ର ପ୍ରତିନିଧିମାନେ ଅନୁଷ୍ଠାନଗୁଡ଼ିକୁ ପରିଦର୍ଶନ କରି ପାରିବେ ।

(।୶) ଗୋଟିଏ ଅନୁଷ୍ଠାନ ପାଇଁ ବର୍ଷକ ସକାଶେ ମଞ୍ଜୁର ହୋଇଥିବା ଗ୍ରାଣ୍ଟ ତ୍ରୈମାସିକ କିସ୍ତିରେ ଦିଆଯାଏ ।

(।୷) କାହା ପକ୍ଷେ କେଉଁ କାର୍ଯ୍ୟ ପାଇଁ ସାହାଯ୍ୟ ଦିଆଯିବ, ତାହା ତଳେ ଉଲ୍ଲେଖ କରାଗଲା—

(କ) ଶିଶୁମଙ୍ଗଳ;

(ଖ) ନାରୀ ମଙ୍ଗଳ; ଏବଂ

(ଗ) ମୂକ, ବଧିର ପ୍ରଭୃତି ଅସୁବିଧା ଭୋଗ କରୁଥିବା ଲୋକମାନଙ୍କ ମଙ୍ଗଳ ଓ ଯୁବକ ଅପରାଧୀମାନଙ୍କ ମଙ୍ଗଳ ।

## ୩ । ସାହାଯ୍ୟ ପାଇଁ କିପରି ଦରଖାସ୍ତ କରିବାକୁ ହେବ

ସାହାଯ୍ୟ ଉଦ୍ଦେଶ୍ୟରେ ସବୁ ଦରଖାସ୍ତ "ଜଏଣ୍ଟ ସେକ୍ରେଟେରୀ, ଡେଭେଲପମେଣ୍ଟ (ପ୍ଲାନିଂ) ଡିପାର୍ଟମେଣ୍ଟ, ଗଭର୍ଣ୍ଣମେଣ୍ଟ ଅଫ୍ ଓଡ଼ିଶା, ନୂଆ ରାଜଧାନୀ, ଭୁବନେଶ୍ୱର" ଠିକଣାରେ ପଠାଇବାକୁ ହେବ । ଦରଖାସ୍ତରେ ନିମ୍ନଲିଖିତ ବିଷୟଗୁଡ଼ିକ ଉଲ୍ଲେଖ କରିବାକୁ ହେବ ।

(୵) ଅନୁଷ୍ଠାନର ନାମ ଓ ସଭ୍ୟପଦ ବିଷୟରେ ବିଶେଷ ବିବରଣୀ ।

(୶) ଅନୁଷ୍ଠାନର ଉଦ୍ଦେଶ୍ୟ ଓ କାର୍ଯ୍ୟକଳାପ ବିଷୟରେ ସଂକ୍ଷିପ୍ତ ବିବରଣୀ ।

(୷) କେନ୍ଦ୍ର ସରକାରଙ୍କଠାରୁ ଏ ପର୍ଯ୍ୟନ୍ତ ଯଦି କିଛି ଗ୍ରାଣ୍ଟ ମିଳିଥାଏ, ତାର ବିବରଣୀ ।

(।) ରାଜ୍ୟ ସରକାରଙ୍କଠାରୁ ଓ ଅନ୍ୟ ସ୍ଥଳରୁ ଏ ପର୍ଯ୍ୟନ୍ତ ଯଦି କିଛି ଗ୍ରାଣ୍ଟ ମିଳିଥାଏ, ଗତ ୩ ବର୍ଷ ଭିତରେ ମିଳିଥିବା ଗ୍ରାଣ୍ଟର ପରିମାଣ ବର୍ଷକୁ ବର୍ଷ କରି ଦେବାକୁ ହେବ ।

(।୵) ଗତ ୩ ବର୍ଷ ଭିତରେ ଅନୁଷ୍ଠାନର ହୋଇଥିବା ବାର୍ଷିକ ଆୟ ।

(।୶) ଗତ ୩ବର୍ଷ ଭିତରେ ଅନୁଷ୍ଠାନର ପ୍ରକୃତ ଖର୍ଚ୍ଚ ।

(।୷) ଗତ ୩ବର୍ଷ ଭିତରେ ନିଅଣ୍ଟ ବା ବଳକା ।

(୳) ଚଳିତ ବର୍ଷ ଆରମ୍ଭରେ ଅନୁଷ୍ଠାନର ପାଣ୍ଠି ।

(୳୵) ଅନୁଷ୍ଠାନର ଅନ୍ୟ କିଛି ଦେଣା ବା ପାଉଣା ଥିଲେ ତାହାର ବିବରଣ ।

(୳୶) ଚଳିତ ବର୍ଷରେ ଅନୁଷ୍ଠାନର ଆନୁମାନିକ ଆୟ ।

(ଗ//) ଚଳିତ ବର୍ଷରେ ଆନୁମାନିକ ଖର୍ଚ୍ଚ, ନୂଆ କାମପାଇଁ ହୋଇଥିବା ପରିକଳ୍ପନା ଓ ତାହାର ଖର୍ଚ୍ଚ ବିଷୟରେ ସୂଚନା ଦେବାକୁ ହେବ ।

(ଘ) ପ୍ରାର୍ଥନା କରାଯାଇଥିବା ସାହାଯ୍ୟର ପରିମାଣ ।

(ଘ/) କେଉଁ ଉଦ୍ଦେଶ୍ୟରେ ସାହାଯ୍ୟ ପାଇଁ ପ୍ରାର୍ଥନା କରାଯାଇଛି ।

(ଘ//) ସବ୍‌ଶେଷରେ ଅଡିଟ ହୋଇଥିବା ହିସାବ ଓ ରିପୋର୍ଟ ସିନ୍ଦ୍ରଟରେ ଦେବାକୁ ହେବ ।

ଦରଖାସ୍ତରେ ସଂଯୁକ୍ତ ହୋଇଥିବା କାଗଜପତ୍ର ଯାଞ୍ଚ କରିବା ପାଇଁ ସଂପୃକ୍ତ ଜିଲ୍ଲା କଲେକ୍ଟରଙ୍କ ବା ସ୍ଥାନୀୟ କର୍ତ୍ତୃପକ୍ଷଙ୍କ ଜରିଆରେ ବୋର୍ଡଙ୍କ ଶାଖାକୁ ସ୍ୱତନ୍ତ୍ର ଭାବରେ ଦରଖାସ୍ତର ଗୋଟିଏ ନକଲ ନିଶ୍ଚୟ ପଠାଇବାକୁ ହେବ ।

## ୪ । କେନ୍ଦ୍ର ସମାଜମଙ୍ଗଳ ବୋର୍ଡଦ୍ୱାରା ଏ ପର୍ଯ୍ୟନ୍ତ ଦିଆଯାଇଥିବା ସାହାଯ୍ୟ

ବୋର୍ଡ ସ୍ଥାପିତ ହେବାର ଅବ୍ୟବହିତ ପରେ ବୋର୍ଡଙ୍କ ସାହାଯ୍ୟ ପାଇବା ପାଇଁ ଦରଖାସ୍ତ ଦେବା ସକାଶେ ଦେଶର ସମାଜମଙ୍ଗଳ ସଂଗଠନଗୁଡ଼ିକୁ ଅନୁରୋଧ କରାଯାଇ ସମ୍ବାଦପତ୍ର ଜରିଆରେ ଓ ଅନ୍ୟାନ୍ୟ ଭାବରେ ପ୍ରଚାର କରାଯାଇଥିଲା । ବୋର୍ଡ ଅନେକଗୁଡ଼ିଏ ସ୍ୱେଚ୍ଛା ସେବାମୂଳକ ମଙ୍ଗଳବିଧାନ ସଂଗଠନମାନଙ୍କୁ ଆର୍ଥିକ ସାହାଯ୍ୟ ଦେଇ ସାରିଲେଣି ।

ଓଡ଼ିଶା ରାଜ୍ୟର ନିମ୍ନଲିଖିତ ଅନୁଷ୍ଠାନମାନେ ସେମାନଙ୍କ ନାମ ପାର୍ଶ୍ୱରେ ଲିଖିତ ସାହାଯ୍ୟ କେନ୍ଦ୍ର ସମାଜମଙ୍ଗଳ ବୋର୍ଡଠାରୁ ପାଇ ସାରିଛନ୍ତି ।

| ସଂଗଠନର ନାମ | ମଞ୍ଜୁର ହୋଇଥିବା ଟଙ୍କାର ପରିମାଣ |
|---|---|
| ୧ । ଅନାଥାଶ୍ରମ, ପୁରୀ | ... ଟ ୫,୦୦୦୵ |
| ୨ । ମୀନା ବଜାର, କଟକ | ... ଟ ୭,୦୦୦୵ |
| ନାରୀମଙ୍ଗଳ:— | |
| ୩ । ନାରୀ ଜଗତ, କଟକ | ... ଟ ୧୦୦୦୵ |
| ୪ । ନାରୀସେବା ସଂଘ, ବାରିପଦା | ... ଟ ୧,୦୦୦୵ |
| ୫ । ମହିଳା କୁଟୀର ଶିଳ୍ପ ଶିକ୍ଷାଶ୍ରମ, ପୁରୀ | ... ଟ ୨,୦୦୦୵ |
| ୬ । ଉତ୍କଳ ନାରୀ କଲ୍ୟାଣ ସଂଗଠନ ସମିତି | ଟ ୭,୦୦୦୵ |
| ୭ । ଗୃହଲକ୍ଷ୍ମୀ ସମବାୟ ସମିତି, ଚେଲେଙ୍ଗାବଜାର, କଟକ | ... ଟ ୨,୦୦୦୵ |
| ୮ । କେଲଭି ହବାକ୍ ମାତୃ ଓ ଶିଶୁମଙ୍ଗଳ ସମିତି, କଟକ | ... ଟ ୫,୦୦୦୵ |
| ୯ । ବସନ୍ତ କୁମାରୀ ବିଧବାଶ୍ରମ, ପୁରୀ | ଟ ୫,୦୦୦୵ |
| ମୂକ ବଧିର ଆଦିଙ୍କ ମଙ୍ଗଳ ବିଧାନ:— | |
| ୧୦ । ନିଖିଳ ଓଡ଼ିଶା ମୂକ-ବଧିର ବିଦ୍ୟାଳୟ, କଟକ | ... ଟ ୩,୦୦୦୵ |
| ସାଧାରଣ ମଙ୍ଗଳବିଧାନ:— | |
| ୧୧ । ସର୍ଭେଣ୍ଟସ୍ ଅଫ୍ ଇଣ୍ଡିଆ ସୋସାଇଟୀ, କଟକ | ... ଟ ୩,୦୦୦୵ |
| ୧୨ । ରାମକୃଷ୍ଣ ମିସନ, ପୁରୀ | ... ଟ ୧,୧୦୦୵ |
| ୧୩ । ବାଲଦେବ ସେବା ସଂଘ ଜିଲ୍ଲା ମୟୂରଭଞ୍ଜ, ଓଡ଼ିଶା | ... ଟ ୨,୦୦୦୵ |
| ୧୪ । ଶାନ୍ତି ସେବାସଂଘ, ରମ୍ଭା, ଗଞ୍ଜାମ | ଟ ୨୦୦୦୵ |
| ୧୫ । ଗ୍ରାମମଙ୍ଗଳ ସମିତି, ପୋଷ୍ଟିଲୋ, କେନ୍ଦୁଝର | ... ଟ ୧,୦୦୦୵ |
| ୧୬ । ସଂଘବାଲୟ, ଗୋପବନ୍ଧୁ ଭବନ; ପୋ: ସମ୍ପ୍ରାଦ ନଗର, ବାଲେଶ୍ୱର | ... ଟ ୧,୦୦୦୵ |

## ୫ । ରାଜ୍ୟ ସମାଜମଙ୍ଗଳ ପରାମର୍ଶଦାତା ବୋର୍ଡ

ରାଜ୍ୟମାନଙ୍କରେ ଥିବା ସମାଜମଙ୍ଗଳ ଅନୁଷ୍ଠାନ, ରାଜ୍ୟସରକାର ଓ କେନ୍ଦ୍ର ସମାଜ ମଙ୍ଗଳ ବୋର୍ଡ-ମାନଙ୍କ ଭିତରେ ଅପେକ୍ଷାକୃତ ଭଲ ସମନ୍ୱୟ ସ୍ଥାପନ କରିବା ଉଦ୍ଦେଶ୍ୟରେ ଓ ରାଜ୍ୟମାନଙ୍କରେ କାର୍ଯ୍ୟ କରୁଥିବା ଅନୁଷ୍ଠାନମାନଙ୍କ ଭିତରୁ ଅଧିକ ଅନୁଷ୍ଠାନକୁ ସାହାଯ୍ୟ ଦେବା ଓ ସେଗୁଡ଼ିକ ବିଷୟରେ ବହୁଳ

ଆଲୋଚନା କରିବା ଉଦ୍ଦେଶ୍ୟରେ ରାଜ୍ୟମଙ୍ଗଳ ପରାମର୍ଶଦାତା ବୋର୍ଡ଼ ଗଠନ କରିବା ପାଇଁ କେନ୍ଦ୍ର ସମାଜମଙ୍ଗଳ ବୋର୍ଡ଼ ରାଜ୍ୟ ସରକାରମାନଙ୍କୁ ଅନୁରୋଧ କରିଛନ୍ତି । ଏହି ଅନୁସାରେ ଶ୍ରୀମତୀ ମାଳତୀ ଚୌଧୁରୀଙ୍କ ସଭାନେତ୍ରୀତ୍ୱରେ ରାଜ୍ୟସରକାର ରାଜ୍ୟମଙ୍ଗଳ ପରାମର୍ଶଦାତା ବୋର୍ଡ଼ ଗଠନ କରିଛନ୍ତି । କେଉଁମାନଙ୍କୁ ନେଇ ଏ ବୋର୍ଡ଼ ଗଢ଼ାଯାଇଛି ଓ ଏହାର କାର୍ଯ୍ୟ କଣ, ତାହା ସରକାରଙ୍କ ଦ୍ୱାରା ପ୍ରକାଶିତ ହୋଇଥିବା ଗୋଟିଏ ନିର୍ଦ୍ଧାରଣରେ ଘୋଷଣା କରାଯାଇଛି ।

## ୭ । ମଙ୍ଗଳବିଧାନ ସଂପ୍ରସାରଣ ଯୋଜନା

୫୦୦ ଟି ମଙ୍ଗଳବିଧାନ ସଂପ୍ରସାରଣ ଯୋଜନା ସ୍ଥିର କରିବା ପାଇଁ ମଧ୍ୟ କେନ୍ଦ୍ର ସମାଜମଙ୍ଗଳ ବୋର୍ଡ଼ ସ୍ଥିର କରିଛନ୍ତି । ରାଜ୍ୟ ମଙ୍ଗଳବିଧାନ ପରାମର୍ଶଦାତା ବୋର୍ଡ଼ଙ୍କ ସହିତ ପରାମର୍ଶ କରାଯାଇ ଓ ରାଜ୍ୟ ସରକାରମାନଙ୍କ ସହଯୋଗରେ ପ୍ରଚଳିତ ସ୍ୱେଚ୍ଛାସେବମୂଳକ ମଙ୍ଗଳବିଧାନ ସଂଗଠନମାନଙ୍କ ଦ୍ୱାରା ଏ ସୂତ୍ରକୁ କାର୍ଯ୍ୟରେ ପରିଣତ କରାଯିବ । ସମଗ୍ର ଭାରତରେ ଉନ୍ନତ ଧରଣର ଜୀବନଯାପନ କରିବା ବିଷୟରେ ବ୍ୟବସ୍ଥା କରିବା ପାଇଁ ମଙ୍ଗଳବିଧାନ ସଂପ୍ରସାରଣ ଯୋଜନା ଏକ ପରୀକ୍ଷା ମାତ୍ର । ଏଥିରେ ପ୍ରତିଯୋଗିତା ଅପେକ୍ଷା ସହଯୋଗ ଉପରେ ଅଧିକ ଗୁରୁତ୍ୱ ଦିଆଯାଇଛି । ଯୋଜନାର ପରିକଳ୍ପନା ସବୁଟି ମୌଳିକ ଧାରଣା ଉପରେ ପ୍ରତିଷ୍ଠିତ:—

(୧) ପ୍ରଚଳିତ ସ୍ୱେଚ୍ଛାକୃତ ମଙ୍ଗଳବିଧାନ ଅନୁଷ୍ଠାନ ଗୁଡ଼ିକର ଉତ୍ସାହର ପୂର୍ଣ୍ଣ ଉପଯୋଗ କରିବାକୁ ହେବ;

(୨) ବିଭିନ୍ନ ଧରଣର କାର୍ଯ୍ୟ କରୁଥିବା ଗ୍ରାମ୍ୟ ଅନୁଷ୍ଠାନମାନଙ୍କ ମଧ୍ୟରେ ପୂର୍ଣ୍ଣ ସହଯୋଗ ସ୍ଥାପନ କରିବାକୁ ହେବ;

(୩) ଯେଉଁ ଯେଉଁ ଅଞ୍ଚଳରେ ବର୍ତ୍ତମାନ ମଙ୍ଗଳ ବିଧାନ କାର୍ଯ୍ୟ ସ୍ଥିର ନାହିଁ; ପ୍ରଧାନତଃ ସେହି ସେହି ଅଞ୍ଚଳରେ ଏବଂ ଯେଉଁ ଯେଉଁ ବିଷୟରେ ଏପରି କାର୍ଯ୍ୟର ପ୍ରତିଷ୍ଠାନମାନଙ୍କ ଆବଶ୍ୟକ, ପ୍ରଧାନତଃ ସେହି ସେହି ବିଷୟରେ ଏପରି କାର୍ଯ୍ୟ ସଂପାଦନ କରାଯିବ । ଆବଶ୍ୟକ ହେଲେ ଅନ୍ୟତ୍ର ମଧ୍ୟ ଏ କାର୍ଯ୍ୟ କରାଯାଇ ପାରିବ ।

(୪) ଏହି ସାଧାରଣ ଏବଂ ସମ୍ମିଳିତ ଉଦ୍ୟମରେ କେନ୍ଦ୍ରୀୟ ମଙ୍ଗଳ ବିଧାନ ବୋର୍ଡ଼, ରାଜ୍ୟ ସାମାଜିକ ମଙ୍ଗଳ ବିଧାନ ପରାମର୍ଶଦାତା ବୋର୍ଡ଼ମାନେ, ସ୍ଥାନୀୟ ଅନୁଷ୍ଠାନମାନେ ଏବଂ ସ୍ଥାନୀୟ ମଙ୍ଗଳବିଧାନ ଅନୁଷ୍ଠାନମାନେ ସମସ୍ତେ ସକ୍ରିୟ ଅଂଶୀଦାର ହେବେ ।

## ଏହାର ଲକ୍ଷ୍ୟ ଓ ଉଦ୍ଦେଶ୍ୟ

ଆମ ଦେଶରେ ଗ୍ରାମ୍ୟ ଅଞ୍ଚଳମାନଙ୍କର ଅଭାବ ଅସୁବିଧା ମୋଚନ ବିଷୟରେ ସାମାଜିକ ସେବାନୁଷ୍ଠାନମାନଙ୍କର ବୃତ୍ତିକର କାର୍ଯ୍ୟକଳାପ ବିଶେଷ ଭାବରେ ପ୍ରଯୁକ୍ତ ହୋଇନାହିଁ । ଏବେ ସେହି ଅଞ୍ଚଳମାନଙ୍କରେ ଆମର ଦୃଷ୍ଟି ପକାଇବାର ସମୟ ଆସିଛି । ଏହି ଉଦ୍ଦେଶ୍ୟରେ କେନ୍ଦ୍ର ସମାଜ ଉନ୍ନୟନ ବୋର୍ଡ଼ ଏହି ଯୋଜନାକୁ କାର୍ଯ୍ୟକାରୀ କରିବାର ସିଦ୍ଧାନ୍ତ କରିଅଛନ୍ତି । ଏହା କାର୍ଯ୍ୟକାରୀ ହେଲେ ଭାରତର ସର୍ବତ୍ର ପ୍ରଚଳିତ ମଙ୍ଗଳବିଧାନ ଅନୁଷ୍ଠାନମାନେ ବଢ଼ି ଗ୍ରାମ ଗ୍ରାମ ଭିତରକୁ ବ୍ୟାପି ଯିବେ ଏବଂ ଲୋକସାଧାରଣଙ୍କର ଦ୍ୱାରେ ଦ୍ୱାରେ ସୁଖସ୍ୱାଚ୍ଛନ୍ଦ୍ୟ ପହଞ୍ଚାଇ ପାରିବେ ।

କିନ୍ତୁ ସେ ଯୋଜନା କଥା ସ୍ୱତନ୍ତ୍ର । ସବୁ କ୍ଷେତ୍ରରେ ଗୋଟିଏ ଅନୁଷ୍ଠାନକୁ ବୋର୍ଡ଼ର ସାହାଯ୍ୟ ମିଳି ନ ପାରେ । ସାମାଜିକ ଉନ୍ନୟନ ଅନୁଷ୍ଠାନମାନଙ୍କ ମଧ୍ୟରେ ସଂହତି ଓ ସହଯୋଗ ବଢ଼ାଇବାର ନୀତି ଅନୁସରଣ କରି ଗୋଟିଏ ଅଞ୍ଚଳର ବହୁ ଉନ୍ନୟନ ଅନୁଷ୍ଠାନମାନଙ୍କୁ ନେଇ ଗୋଟିଏ ଗୋଟିଏ ଯୋଜନା କାର୍ଯ୍ୟକାରୀ କରିବା ଦ୍ୱାରା

ଭାଲୁନ୍ଟ୍ରିକ ଗଢ଼ାଯିବାର ପ୍ରସ୍ତାବ ହୋଇଛି । ଫେଡ୍ସ ସେମାନଙ୍କ ମଧ୍ୟରେ ସଂହତି ଆଣିବା ସଙ୍ଗେ ସଙ୍ଗେ ଉଦ୍ୟମର ମାତ୍ରା ଓ ନିପୁଣତା ବୃଦ୍ଧି ପାଇବ । ଏହି ଯୋଜନା ସମ୍ପୃକ୍ତ କାର୍ଯ୍ୟରେ ପରିଣତ କରିବା ନିମନ୍ତେ କେନ୍ଦ୍ର ସମାଜ କଲ୍ୟାଣ ବୋର୍ଡ ସ୍ୱୀକୃତି-ପ୍ରାପ୍ତ ଓ ସ୍ୱେଚ୍ଛାସେବୀ ସାମାଜିକ ମଙ୍ଗଳବିଧାନ ଅନୁଷ୍ଠାନମାନଙ୍କୁ ମନୋନୀତ କରିବେ । ଏହି ଯୋଜନାମାନଙ୍କର କାର୍ଯ୍ୟ -ପ୍ରଥମତଃ ନିମ୍ନଲିଖିତ ପ୍ରକଳ୍ପମାନଙ୍କରେ ସୀମାବଦ୍ଧ ରହିବ:—

(/) ଶିଶୁମଙ୍ଗଳ ।

(//) ନାରୀମଙ୍ଗଳ ।

(///) ହତଭାଗିନୀ ଯୁବକ ଯୁବତୀମାନଙ୍କର ସଂଶୋଧନ ଓ ପୁନର୍ବାସ ବ୍ୟବସ୍ଥା ।

(।) ବିକଳାଙ୍ଗ ନରନାରୀମାନଙ୍କର ମଙ୍ଗଳ ନିମନ୍ତେ ଚିକିତ୍ସା, ଶିକ୍ଷା ଓ ପୁନର୍ବସତି ବ୍ୟବସ୍ଥା ।

ଚଳିତ ବର୍ଷ ଓ ଆଗାମୀ ବର୍ଷରେ ଦେଶରେ ୩୦୦ କଲ୍ୟାଣ ସଂପ୍ରସାରଣ ଯୋଜନା ହାତକୁ ନିଆଯିବ । ଏହି ଯୋଜନା ଭିତରୁ ଓଡ଼ିଶା ଭାଗରେ ୧୨ଟି ପଡ଼ିବାର ସମ୍ଭାବନା ରହିଛି । ହିସାବ କରି ଦେଖାଯାଇଛି ଯେ, ପ୍ରତି ସଂପ୍ରସାରଣ ଯୋଜନାରେ ପ୍ରାୟ ଟ ୫୦,୦୦୦୲ ଖର୍ଚ୍ଚ ହେବ । କେନ୍ଦ୍ର ସମାଜ କଲ୍ୟାଣ ବୋର୍ଡ ଶତକଡ଼ା ୫୦ ପର୍ଯ୍ୟନ୍ତ ସାହାଯ୍ୟ ଦେବେ ଏବଂ ପ୍ରତି ଯୋଜନା ପାଇଁ ସାହାଯ୍ୟର ବ୍ୟବସ୍ଥା ନିମନ୍ତେ କିଛି ଟଙ୍କା ମଞ୍ଜୁର କରିବେ । ମନୋନୀତ ଅନୁଷ୍ଠାନମାନେ ସ୍ଥାନୀୟ ଜନ ସାହାଯ୍ୟରେ ଅବଶିଷ୍ଟ ଶତକଡ଼ା ୫୦ ସଂଗ୍ରହ କରିବେ । ଆବଶ୍ୟକ ହେଲେ ରାଜ୍ୟସରକାର ମଧ୍ୟ କିଛି ସାହାଯ୍ୟ ଦେବେ ।

ମଙ୍ଗଳ ବିଧାନ ସଂପ୍ରସାରଣ ଯୋଜନା ସମ୍ପର୍କରେ ପ୍ରଚଳିତ ମଙ୍ଗଳ ସାଧନ ଅନୁଷ୍ଠାନମାନଙ୍କରେ ଇଚ୍ଛା ଓ ଯୋଗ୍ୟତା ବିଷୟ ଜାଣିବା ନିମନ୍ତେ ବୋର୍ଡର ଏକ ପ୍ରଶ୍ନାବଳୀ ବିଭିନ୍ନ ମଙ୍ଗଳ-ବିଧାନ ଅନୁଷ୍ଠାନମାନଙ୍କଠାକୁ ପଠାଇ ସେମାନଙ୍କର ମତାମତ ନେଉଛନ୍ତି ।

କେନ୍ଦ୍ର ସମାଜିକ କଲ୍ୟାଣ ବୋର୍ଡ ଜଣେ ଓଡ଼ିଶାର ଏହିପରି ୮ ଗୋଟି ଅନୁଷ୍ଠାନକୁ ପ୍ରଶ୍ନାବଳୀ ପଠାଇ ଦେଲେଣି ।

୧ । ଓଡ଼ିଶା ଓମେନ୍'ସ୍ ଲିଗ ଅଫ ସର୍ଭିସ, କଟକ ।

୨ । କଟକ ଡିଷ୍ଟ୍ରିକ୍ଟ ରେଡକ୍ରସ ସୋସାଇଟି ।

୩ । ନାରୀ ସେବା ସଂଘ, ବ୍ରହ୍ମପୁର, ଗଞ୍ଜାମ ।

୪ । ପୁରୀ ଅନାଥ ଆଶ୍ରମ, ପୁରୀ ।

୫ । ମୀନା ବଜାର, ପ୍ରଜାତନ୍ତ୍ର ବିଲ୍‌ଡିଂସ୍, କଟକ-୨ ।

୬ । ଲେଡି ହବାର୍ଡ ମେଟର୍ନିଟି ଚାଇଲ୍ଡ୍ ଓ୍ୱେଲଫେୟାର ସୋସାଇଟି, ଦୋଧୁନମିତ, କଟକ ।

୭ । ଅଲ୍ ଓଡ଼ିଶା ଡେଫ୍ ଆଣ୍ଡ ଡମ୍ବ୍ ସ୍କୁଲ, ସନସାଇନ ରୋଡ୍; କଟକ-୨ ।

୮ । ରାମକୃଷ୍ଣ ମିଶନ, ପୁରୀ ବ୍ରାଞ୍ଚ, ପୁରୀ ଡିଷ୍ଟ୍ରିକ୍ଟ ।

ପ୍ରଶ୍ନାବଳୀର ନକଲ କ୍ୟାବିନେଟ୍ ( ପ୍ଲାନିଂ ) ଡିପାର୍ଟମେଣ୍ଟରୁ ମିଳିପାରିବ । ରାଜ୍ୟର ସାମାଜିକ କଲ୍ୟାଣ ଅନୁଷ୍ଠାନମାନଙ୍କୁ ଏପରି ପରାମର୍ଶ ଦିଆଯାଇଛି ଯେ ପ୍ରଶ୍ନାବଳୀରେ ଥିବା ସମ୍ବାଦ ସେମାନେ କେନ୍ଦ୍ର ସାମାଜିକ କଲ୍ୟାଣ ବୋର୍ଡଠାକୁ ପଠାଇବେ ଏବଂ ରାଜ୍ୟ ସାମାଜିକ କଲ୍ୟାଣ ବୋର୍ଡଠାକୁ ପଠାଇବେ । ସେମାନେ ନିଜ ନିଜର କାର୍ଯ୍ୟକ୍ରମ ପ୍ରସ୍ତୁତ କରି ତହିଁର ନକଲ ମଧ୍ୟ ଏହି ଦୁଇ ବୋର୍ଡଙ୍କଠାକୁ ପଠାଇବେ । ତାହାହେଲେ ସେମାନଙ୍କୁ କେନ୍ଦ୍ର ସାମାଜିକ କଲ୍ୟାଣ ବୋର୍ଡ ଦେବାର ସୁଯୋଗ ମିଳିବାର ସୁବିଧା ହେବ ।

## ମସିଣା ବୁଣିବାର ନୂଆ ଉପାୟ

ମସିଣା ବୁଣିବା କାର୍ଯ୍ୟର ଉନ୍ନତି ପାଇଁ ଯେଉଁ ବ୍ୟକ୍ତି ବା ବ୍ୟକ୍ତିମାନେ କାର୍ଯ୍ୟରେ ପରୀକ୍ଷିତ ହେବା ଭଳି ସୂଚନା ଦେବେ, ତାଙ୍କୁ ଟ ୨୦୦୦୲ ପର୍ଯ୍ୟନ୍ତ ପୁରସ୍କାର ଦିଆଯିବ । ଏ ବିଷୟରେ ଯେଉଁମାନେ ଆଗ୍ରହାନ୍ୱିତ ଥିବେ, ବିଶଦ ବିବରଣ ଜାଣିବାପାଇଁ ସେମାନେ "ସେକ୍ରେଟାରୀ, କୁଟୀରଶିଳ୍ପ ବୋର୍ଡ଼"ଙ୍କ ପାଖକୁ ଦରଖାସ୍ତ କରନ୍ତୁ । ଏ କଥା ସ୍ପଷ୍ଟ ଭାବରେ ବୁଝି ହେବା ଦରକାର ଯେ, ପୁରସ୍କାର ପାଇବା ବ୍ୟକ୍ତି ଯେଉଁ ସୂଚନା ଦେଇଥିବେ ବା ଯେଉଁ ଉଦ୍ଭାବନ କରିଥିବେ; ଓଡ଼ିଶା ରାଜ୍ୟର ମସିଣା ବୁଣାଳିମାନେ ତାକୁ କାର୍ଯ୍ୟରେ ଲଗାଇଲେ ସେ କୌଣସି ଆପତ୍ତି କରିବେ ନାହିଁ—ଏ ମର୍ମରେ ତାଙ୍କୁ ଗୋଟିଏ ଚୁକ୍ତିପତ୍ର ଲେଖିଦେବାକୁ ହେବ ।

## କୁଟୀରଶିଳ୍ପର ଉତ୍ପାଦନ ଖର୍ଚ୍ଚ କମାଇବାର ଉପାୟ

ବର୍ତ୍ତମାନ ଯେଉଁ କୁଟୀରଶିଳ୍ପ ଗୁଡ଼ିକ ରହିଛି; ତାହାର ଉତ୍ପାଦନ ଖର୍ଚ୍ଚ କମାଇବାପାଇଁ ଯେଉଁମାନେ କାର୍ଯ୍ୟକାରୀ ଉପାୟ ଓ ପ୍ରଣାଳୀ ବାହାର କରିବେ କିମ୍ବା ଉତ୍କୃଷ୍ଟ କାମ ହେବା ପାଇଁ ଯନ୍ତ୍ର ଉଦ୍ଭାବନ କରିବେ କିମ୍ବା ନୂଆ ଧରଣର ଉତ୍ପାଦନ ବାଟ ଦେଖାଇବେ, ସେମାନଙ୍କୁ ବାର୍ଷିକ ଯଥାକ୍ରମେ ଟ ୧୦୦୦୲ ଓ ଟ ୫୦୦୲ ମୂଲ୍ୟର ଦୁଇଟି ପୁରସ୍କାର ଦେବାପାଇଁ ଓଡ଼ିଶାର କୁଟୀରଶିଳ୍ପ ବୋର୍ଡ ସ୍ଥିର କରିଛନ୍ତି ।

ଏ ପୁରସ୍କାର ପାଇବାପାଇଁ ନିର୍ଦ୍ଧାରିତ ଫାରମରେ ଦରଖାସ୍ତ କରିବାକୁ ହେବ । ଦରଖାସ୍ତ ଫାରମ କଟକସ୍ଥ କୁଟୀରଶିଳ୍ପ ବୋର୍ଡ଼ଙ୍କ ଅଫିସରୁ ମିଳିବ । ତା ୩୧ । ୧୨ । ୫୪ ସୁଦ୍ଧା ଦରଖାସ୍ତ ଦେବାକୁ ହେବ ।

## ଓଡ଼ିଶା ବିକ୍ରିକର ଆଇନରେ ସଂଶୋଧନ

ଓଡ଼ିଶା ସେଲ୍ସ୍‌ଟ୍ୟାକ୍ସ ଆକ୍ଟରେ କେତେକ ସଂଶୋଧନ କରିବାପାଇଁ ଯେଉଁ ପ୍ରସ୍ତାବ କରାଯାଇଛି, ଗତ କେତେ ମାସ ହେଲା ସେ ସମ୍ପର୍କରେ କ୍ରମାଗତ ଆନ୍ଦୋଳନ ହୋଇ ଆସୁଛି । ସରକାର ଏ ବିଷୟଟିକୁ ନିଜେ ଚିନ୍ତିତ ଭାବରେ ଲକ୍ଷ୍ୟ କରୁଛନ୍ତି । ଟଙ୍କାକେ ଦୁଇଅଣା ପର୍ଯ୍ୟନ୍ତ ବିକ୍ରିକର ବସାଇବାପାଇଁ ସରକାରଙ୍କୁ ସାଧାରଣ କ୍ଷମତା ଦେବା ନିମନ୍ତେ "ସଂଶୋଧନ ବିଲ୍"ର ଗୋଟିଏ ଦଫାରେ ପ୍ରସ୍ତାବ କରାଯାଇଛି । ଏ ସଂଶୋଧନକୁ କେନ୍ଦ୍ର କରି ଆନ୍ଦୋଳନ ଚାଲିଛି । ଆଇନରେ ବର୍ତ୍ତମାନ ଯେଉଁ ବ୍ୟବସ୍ଥା ଅଛି; ସେ ଅନୁସାରେ ଟଙ୍କାକେ ଏକଅଣାରୁ ଅଧିକ ହାରରେ ବିକ୍ରିକର ହେବ ନାହିଁ । ବ୍ୟବସ୍ଥାର ସଂଶୋଧନ ପାଇଁ ପ୍ରସ୍ତାବ କଲାବେଳେ ଓ ଟଙ୍କାକେ ସର୍ବୋଚ୍ଚ ଦୁଇଅଣା ଲେଖାଏଁ କର ବସାଇବା ପାଇଁ କ୍ଷମତା ଗ୍ରହଣ କଲାବେଳେ ସରକାର କେବଳ ଉଚ୍ଚଶ୍ରେଣୀର ସିଗାରେଟ୍, ଚୁରୁଟ୍ ଓ ପାଇପ ତମାଖୁ ଭଳି ଦାମିକା ତମାଖୁ କଥା ଦୃଷ୍ଟିରେ ରଖିଥିଲେ । ଏ ସବୁ ଧରଣର ତମାଖୁ ବିଳାସ ଦ୍ରବ୍ୟ । ଏହା ଉପରେ ସହଜରେ ବେଶି କର ବସାଯାଇପାରେ । ତେଣୁ କେବଳ ଏହି ସବୁ ଧରଣର ତମାଖୁ ଉପରେ ଥିବା ବିକ୍ରିକର ଟଙ୍କାକେ ଦୁଇଅଣା ପର୍ଯ୍ୟନ୍ତ ବଢ଼ାଇ ଦେବାପାଇଁ କ୍ଷମତା ଗ୍ରହଣ କରିବା ଆବଶ୍ୟକ ବୋଲି ବିବେଚନା କରାଯାଇଛି । ତେବେ ତାହା ବିଲରେ ବ୍ୟବହୃତ ହୋଇଥିବା ଭାଷା ସର୍ବ-

ସାଧାରଣଙ୍କ ମନରେ ଆଶଙ୍କା ଜନ୍ମାଇଛି । ତେଣୁ କେବଳ କେତେକ ନମୁନାର ଜମାଖର୍ଚ୍ଚ ଉପରେ ଦରକୁ ଦୁଇଗୁଣା ବଢ଼ାଇ ଦିଆଯିବ ବୋଲି ପରିଷ୍କାର ଭାବରେ ବୁଝାଇ ଦେବା ପାଇଁ ଏଠା ସଂଶୋଧନ ବିଲର ସମ୍ପୂର୍ଣ୍ଣ ଦଫାକୁ ଉଦ୍ଧୃତ କରାଗଲା । ପରିବର୍ତ୍ତିତ କରିବା ପାଇଁ ବ୍ୟବସ୍ଥା କରାଯାଉଛି । ଏ ବିଷୟରେ ସରକାରଙ୍କ ଉଦ୍ଦେଶ୍ୟ ଯାହା, ତାହା ଏଠାରେ ସ୍ପଷ୍ଟଭାବରେ ବୁଝାଇ ଦିଆଗଲା । ଏହାଦ୍ୱାରା ସର୍ବସାଧାରଣଙ୍କ ମନରୁ ଆଶଙ୍କା ଦୂରୀଭୂତ ହେବ ବୋଲି ଆଶା କରାଯାଏ ।

---

# ସିମେଣ୍ଟର ସଂଶୋଧିତ ଦର

ବସ୍ତାରେ ସିମେଣ୍ଟ ଭର୍ତ୍ତି କରିବା ମଜୁରି ଟନ୍ ପିଛା ଟ ୧୶ ହିସାବରେ ବଢ଼ିଯାଇଛି । ତେଣୁ ରେଲବାଇ ଷ୍ଟେସନରୁ ୫ ମାଇଲ ଭିତରେ ରହୁଥିବା ଓଡ଼ିଶାର ରେଜିଷ୍ଟ୍ରିକୃତ ସିମେଣ୍ଟ ମହଜୁଦକାରୀମାନେ (ଭିନ୍ନ ଭିନ୍ନ ସିମେଣ୍ଟ କମ୍ପାନୀ ଅଧୀନରେ ଥିବା) ଯେଉଁ ଭିନ୍ନ ଭିନ୍ନ ନମୁନାର ସିମେଣ୍ଟ ବିକ୍ରି କରିବେ ତାହାର ମୂଲ୍ୟ ନିମ୍ନରେ ଦିଆଯାଇଛି । ୧୯୫୪ ଜୁଲାଇ ପହିଲା ଦିନ ସେମାନଙ୍କ ପାଖରେ ଯେଉଁ ସିମେଣ୍ଟ ମହଜୁଦ ଥିବ ଓ ଏହାପରେ ଯେଉଁ ସବୁ ସିମେଣ୍ଟ ସେମାନେ ମହଜୁଦ କରିବେ, ଏ ସଂଶୋଧିତ ଦର ସେ ସବୁ ଉପରେ ପ୍ରଯୁଜ୍ୟ ହେବ । ଏ ଦର ତା ୧ । ୭ । ୫୪ଠାରୁ ତା ୩୦ । ୯ । ୫୪ ପର୍ଯ୍ୟନ୍ତ ବଳବତ୍ତର ରହିବ ।

| | |
|---|---|
| ୧ । ମେସର୍ସ ସିମେଣ୍ଟ ମାର୍କେଟିଂ କମ୍ପାନୀ ଅଫ୍ ଇଣ୍ଡିଆଙ୍କଠାରୁ ଆସିଥିଲେ । ... | ଟନ୍ ପ୍ରତି ଟ ୯୭/ ବିକ୍ରିକର ଓ ଅନ୍ୟାନ୍ୟ ସ୍ଥାନୀୟ ଶୁଳ୍କ ସହ; ଅର୍ଥାତ—ନୂଆ ବସ୍ତାରେ ସିମେଣ୍ଟ ଯୋଗାଇ ଦିଆଗଲେ ଓ ଏକ ଟନ୍ ସିମେଣ୍ଟ ୨୦ ଟି ବସ୍ତାରେ ବୋଝେଇ ହୋଇଥିଲେ, ବସ୍ତା ପ୍ରତି ଟ ୪୷/୧ ପଡ଼ିବ । |
| ୨ । ଆଜ୍ ସିମେଣ୍ଟ କମ୍ପାନୀ ଲିମିଟେଡ୍,... ଡାଲମିଆଡ୍ରାଙ୍କଠାରୁ ଆସିଥିଲେ । | ଏକନ୍ । |
| ୩ । ଓଡ଼ିଶା ସିମେଣ୍ଟ ଲିମିଟେଡ୍, ରାଜଗାଙ୍ଗପୁରଙ୍କଠାରୁ ଆସିଥିଲେ । ... | ଟନ୍ ଟ ୧୦୧୷ । ନୂଆ ବସ୍ତାରେ ଯୋଗାଇ ଦିଆଗଲେ ଓ ଏକ ଟନ୍ ସିମେଣ୍ଟ ୨୦ ଟି ବସ୍ତାରେ ବୋଝେଇ ହୋଇଥିଲେ, ବସ୍ତା ପ୍ରତି ଟ ୪୷/୧ ହେବ । ଏଥିରୁ ବିକ୍ରିକର ଓ ଅନ୍ୟାନ୍ୟ ସ୍ଥାନୀୟ ଶୁଳ୍କ ବାଦ ଦିଆଯାଇଛି । |

ଯେଉଁ ସବୁ ସ୍ଥାନ ରେଳ ଷ୍ଟେସନଠାରୁ ୫ ମାଇଲରୁ ଅଧିକ ଦୂରରେ ଅବସ୍ଥିତ, ସେଠାକୁ ବିକ୍ରି କରିବା ପାଇଁ ଗରୁଗାଡ଼ିରେ ସିମେଣ୍ଟ ନିଆଗଲେ ସର୍ବାଧିକ ଗାଡ଼ିଭଡ଼ା ହିସାବରେ ଟନ୍‌କୁ ମାଇଲ ପିଛା ଟ ୦।୬ ପଡ଼ିବ । ପୁରୁଣା ବସ୍ତାରେ ଓ କାଗଜ ଥଳିରେ ସିମେଣ୍ଟ ବୋଝେଇ ହୋଇ ଯୋଗାଇ ଦିଆଯାଉଥିଲେ ସେଥିପାଇଁ ଯେଉଁ ଦର ପଡ଼ିବ, ତାହା କଲେକ୍ଟର ଓ ବିକ୍ରେତାଙ୍କ ଭିତରେ ସ୍ଥିର କରାଯିବ; କିନ୍ତୁ ଏହା ଉପରୋକ୍ତ ସର୍ବୋଚ୍ଚ ବିକ୍ରି ଦରଠାରୁ ଅଧିକ ହେବ ନାହିଁ ।

ମହଜୁତକାରୀମାନେ ଏଥିପୂର୍ବରୁ ଏକ୍ସାଇଜ ଶୁଳ୍କ ରୂପେ ଟନ୍ ପିଛା ଯେଉଁ ଟ ୫୯ ଦେଇଥିଲେ, ତାହା ଉପରୋକ୍ତ ଖର୍ଚ୍ଚରେ ସାମିଲ ହୋଇଛି । ତେଣୁ ଏ ବାବଦରେ ମହଜୁତକାରୀମାନଙ୍କୁ କୌଣସି ଅତିରିକ୍ତ ଖର୍ଚ୍ଚ ବହାଯିବ ନାହିଁ ।

## ଜମାଦି ହୋଇଥିବା ଲୁଗା ଓ ସୂତା ବିକ୍ରି

ଭାରତ ସରକାର ଅସ୍ଥାୟୀ ଭାବରେ ୧୯୪୮ ମସିହାର କଟନ୍ ଟେକ୍ସଟାଇଲ୍ସ (କଣ୍ଟ୍ରୋଲ) ଅର୍ଡ଼ରର ୨୫ ଓ ୨୭ ଦଫାକୁ ରଦ କରି ଦେଇଥିଲେ । ଏ ଦୁଇ ଦଫାକୁ ଆଉ ୬ ମାସ ପର୍ଯ୍ୟନ୍ତ ଅର୍ଥାତ୍ ୧୯୫୪ ଡିସେମ୍ବର ୩୧ ତାରିଖ ପର୍ଯ୍ୟନ୍ତ ରଦ କରି ରଖି ଦେବାପାଇଁ ସରକାର ସ୍ଥିର କରିଅଛନ୍ତି । ଏ ସିଦ୍ଧାନ୍ତ ଫଳରେ ମିଲ୍ ଓ ବେପାରୀମାନେ ୧୯୫୪ ଡିସେମ୍ବର ୩୧ ତାରିଖ ପର୍ଯ୍ୟନ୍ତ ଗଣ୍ଠିର ବନ୍ଧା ଅବସ୍ଥାରେ ବା ଖୋଲା ଅବସ୍ଥାରେ ଜମାଦି ହୋଇଥିବା ଲୁଗା ବା ସୂତା ପୂର୍ବପରି ଖଣ୍ଡ ବନ୍ଦି କରି ପାରିବେ କିମ୍ବା ନିଜ ପାଖରେ ରଖି ପାରିବେ । ବେପାରୀମାନେ ଜମାଦି ହୋଇଥିବା ଲୁଗା ବା ସୂତା ଉପରେ ରାଜ୍ୟ ଟେକ୍ସଟାଇଲସ କଣ୍ଟ୍ରୋଲରଙ୍କଦ୍ୱାରା ଈ.ପି.ଡ. ମୋହର ନ ମରାଇ ତାକୁ ଖୋଲା ଅବସ୍ଥାରେ ବନ୍ଦି କରି ପାରିବେ । ଯେ କୌଣସି ଈ. ପି. ଡ. ମୋହର ଦିଆ ହୋଇଥିବା ଲୁଗା ବା ସୂତାର ବନ୍ଦି ସମୟ ପୂରି ଯାଇଥିଲେ ମଧ୍ୟ ବେପାରୀମାନେ ତାକୁ ତା ୩୧ । ୧୨ । ୫୪ ପର୍ଯ୍ୟନ୍ତ ବନ୍ଦି କରି ପାରିବେ ।

## ଓଡ଼ିଶାରେ ହଇଜା ଓ ବସନ୍ତ ରୋଗ

୧୯୫୪ ଜୁଲାଇ ୧୪ ତାରିଖରେ ଶେଷ ହୋଇଥିବା ପକ୍ଷକ ଭିତରେ ଓଡ଼ିଶାରେ ୧୮ ଜଣ ଲୋକଙ୍କୁ ହଇଜା ଆକ୍ରମଣ କରିଥିଲା ଓ ୧୨ ଜଣ ମରିଥିଲେ । କିନ୍ତୁ ଗତ ପକ୍ଷକ ଭିତରେ ୨୫୩ ଜଣଙ୍କୁ ଏ ରୋଗ ଆକ୍ରମଣ କରି ୭୩ ଜଣ ମରିଥିଲେ । ଗତ ବର୍ଷ ଠିକ୍ ଏହି ପକ୍ଷରେ ୮୯ ଜଣ ପୀଡ଼ିତ ହୋଇ ୩୮ ଜଣ ମୃତ୍ୟୁମୁଖରେ ପଡ଼ିଥିଲେ ।

ରାଜ୍ୟର ସବୁ ଜିଲ୍ଲାରେ ହଇଜାର ପ୍ରକୋପକୁ ଆୟତ୍ତ କରାଯାଇଥିଲା । ସମ୍ବଲପୁର ଓ କେନ୍ଦୁଝର ଜିଲ୍ଲାରେ ନୂଆ ହୋଇ ଏ ରୋଗ ଦେଖାଦେଇଥିଲା । ରୋଗ ଯେପରି ବ୍ୟାପି ନ ଯାଏ, ସେଥିପାଇଁ ଆବଶ୍ୟକୀୟ ପ୍ରତିଷେଧକ ବ୍ୟବସ୍ଥା କରିବା ପାଇଁ ସମ୍ପୃକ୍ତ ଜିଲ୍ଲା ହେଲ୍‌ଥ ଅଫିସରମାନଙ୍କୁ ନିର୍ଦ୍ଦେଶ ଦିଆଯାଇଛି । ଅନ୍ୟାନ୍ୟ ଜିଲ୍ଲାମାନଙ୍କରେ ଏ ରୋଗ ହୋଇନାହିଁ ।

ଏ ପକ୍ଷରେ ୪୨ ଜଣ ଲୋକ ବସନ୍ତରେ ଆକ୍ରାନ୍ତ ହୋଇଥିଲେ ଓ ୫ ଜଣ ମରିଥିଲେ । ପୂର୍ବ ପକ୍ଷରେ ୮୯ ଜଣ ଲୋକ ଏ ରୋଗରେ ପୀଡ଼ିତ ହୋଇ ୮ ଜଣ ମରିଥିଲେ । ଗତ ବର୍ଷ ଠିକ୍ ଏହି ପକ୍ଷରେ ୮୨ ଜଣଙ୍କୁ ବସନ୍ତ ହୋଇଥିଲା ଓ ୧୫ ଜଣ ମରିଥିଲେ ।

କେବଳ ସମ୍ବଲପୁର ଜିଲ୍ଲାରେ ବସନ୍ତର ପ୍ରକୋପ ସାମାନ୍ୟ ବୃଦ୍ଧି ପାଇଥିଲା । କେନ୍ଦୁଝର ଛଡ଼ା ଆଉ ସବୁ ଜିଲ୍ଲାରେ ଏ ରୋଗକୁ ଆୟତ୍ତ କରାଯାଇଥିଲା । କଟକ ଓ ଗଞ୍ଜାମ ଜିଲ୍ଲାରେ ଏ ରୋଗ ନୂଆ ହୋଇ ହୋଇଥିଲା । ଏ ରୋଗ ଯେପରି ଆଉ ବ୍ୟାପି ନ ଯାଏ, ସେଥିପାଇଁ ସମ୍ପୃକ୍ତ ଡିଷ୍ଟ୍ରିକ୍ଟ ହେଲ୍‌ଥ ଅଫିସରମାନେ ପ୍ରୟୋଜନୀୟ ପ୍ରତିଷେଧକ ବ୍ୟବସ୍ଥା କରିଥିଲେ । ଅନ୍ୟାନ୍ୟ ଜିଲ୍ଲାମାନଙ୍କରେ ଏ ରୋଗ ହୋଇ ନ ଥିଲା ।

ପ୍ରଥମ ଟୀକାର ନମ୍ବୀଭୂତ ସଦ୍ୟ-ଜନ୍ମିତଙ୍କରେ ଜନସାଧାରଣଙ୍କୁ ବି. ସି. ଜି. ଟୀକା ଦିଆଯାଇଥିଲା ।

ଏ ପଥରେ ପ୍ରଧାନ ଘଟଣା ହେଉଛି—ବସନ୍ତ ନିୟନ୍ତ୍ରଣ । ମସ୍ତୁଲ ମହାମାରୀ ରୋଗର ପ୍ରାଦୁର୍ଭାବ ବୃଦ୍ଧି ନ ପାଇବା ଉଦ୍ଦେଶ୍ୟରେ ଯଥେଷ୍ଟ ପରିମାଣରେ ପରିଷ୍କାର ପରିଚ୍ଛନ୍ନତା ଓ ସାଧାରଣ ସ୍ୱାସ୍ଥ୍ୟ ବ୍ୟବସ୍ଥା କରାଯାଇଥିଲା । ହଇଜା ପ୍ରତିଷେଧକ ଇଞ୍ଜେକ୍ସନ ଦେବା ବାଧ୍ୟତାମୂଳକ କରାଯାଇ "୧୮୯୭ ମସିହାର ମହାମାରୀ ରୋଗ ଆଇନ" ଅନୁସାରେ ଅସ୍ଥାୟୀ ରେଗୁଲେସନ ଜାରି କରାଯାଇଥିଲା । ଏ ରେଗୁଲେସନ ପୁରୀ ସହର, ଏହାର ଚାରି ଅଞ୍ଚଳ, ସାକ୍ଷୀଗୋପାଳ ଓ ଭୁବନେଶ୍ୱର ଅଞ୍ଚଳରେ ଲାଗୁ କରାଯାଇଥିଲା । ଏ ଉଦ୍ଦେଶ୍ୟରେ ବହୁସଂଖ୍ୟକ ଡାକ୍ତର ଓ ପବ୍ଲିକ ହେଲଥ କର୍ମଚାରୀ ମୁତୟନ ହୋଇଥିଲେ । ସୁଖର କଥା, ରଥଯାତ୍ରା ସମୟରେ କୌଣସି ମହାମାରୀ ରୋଗ ହୋଇ ନ ଥିଲା ।

# ଟ୍ରାକୋମା

୧ । ଅନେକେ ଜାଣିଥିବେ ଯେ, 'ଟ୍ରାକୋମା' ରୋଗଟିଏ ଆଖିରୋଗ ଓ ଏହା ଭାରତବର୍ଷ ବିଶେଷତଃ ଉତ୍ତର ଭାରତରେ ସାଧାରଣତଃ ଦେଖାଯାଏ । କିନ୍ତୁ ଖୁବ୍ ଅଳ୍ପ ଲୋକ ଏହି ରୋଗର ଗୁରୁତ୍ୱ ଓ ତାହା ସଙ୍ଗେ ସଙ୍ଗେ ଏହାର ପ୍ରସାର କମାଇବା ନିମିତ୍ତ ସାଧାରଣ ପ୍ରଚେଷ୍ଟା ଓ ତତ୍ପରତାର ଆବଶ୍ୟକତା ଉପଲବ୍ଧି କରିଥାଆନ୍ତି । ଏହି ରୋଗ ବାବଦରେ ଅତି ସାଧାରଣ ଜଣାଥିଲେ ମଧ୍ୟ ଏହି ରୋଗ ଯେ ଜନସାଧାରଣ, ସୈନ୍ୟବାହିନୀ ଓ ସମଗ୍ର ଦେଶ ପାଇଁ କେତେ ଗୁରୁତ୍ୱପୂର୍ଣ୍ଣ ଏବଂ ଏହାର କୁଫଳରୁ ଅବ୍ୟାହତି ପାଇବା ପାଇଁ କିପରି ସମୂହ ଚେଷ୍ଟାର ପ୍ରୟୋଜନ, ତାହାହିଁ ଆଲୋଚ୍ୟ ବିଷୟ ।

୨ । ଏହି ଟ୍ରାକୋମା ଆଖିରୋଗ ଗୋଟିଏ ଅତି ବ୍ୟାପକ ସଂକ୍ରାମକ ରୋଗ । ଏହା ଗୋଟିଏ କଠିନ ରୋଗ, କାରଣ ଏହାର ଚିକିତ୍ସା ନ ହେଲେ ଏହା ଆଖିର ଦୃଷ୍ଟିଶକ୍ତି ହ୍ରାସ କରିଦିଏ ଓ ଏପରିକି ଆଖି ମଧ୍ୟ ନଷ୍ଟ କରିପାରେ । କହିଲେ ଅତ୍ୟୁକ୍ତି ହେବ ନାହିଁ ଯେ ଦୃଷ୍ଟିଶକ୍ତି ଖରାପ ହେବାର ଏବଂ ଚକ୍ଷୁ ନଷ୍ଟ ହେବାର ଏହା ଗୋଟିଏ ପ୍ରଧାନ କାରଣ ।

୩ । ଏହା ଏକ ଅତି ପୁରୁଣା ରୋଗ । ଖ୍ରୀ: ପୂ: ଊନବିଂଶ ଶତାବ୍ଦୀରେ ମଧ୍ୟ ଏହା ମିଶର ଦେଶ (Egypt)ରେ ଦେଖାଯାଇଥିଲା । ମଧ୍ୟ-ପ୍ରାଚ୍ୟ ଖଣ୍ଡରେ ଏହାର ଜନ୍ମ । ଭ୍ରମଣକାରୀ ଓ ସୈନ୍ୟମାନଙ୍କ ମାଧ୍ୟମରେ ଏହି ରୋଗ ଅନ୍ୟାନ୍ୟ ଦେଶମାନଙ୍କରେ ବ୍ୟାପିଲା । ଭାରତବର୍ଷର ଉତ୍ତର, ପଶ୍ଚିମ ଓ ମଧ୍ୟ ଅଞ୍ଚଳ, ଯେଉଁ ସ୍ଥାନମାନଙ୍କରୁ କି ସୈନ୍ୟବାହିନୀର ଅଧିକାଂଶ ସୈନ୍ୟ ବଛା ହୋଇଥା'ନ୍ତି, ସେହି ଅଞ୍ଚଳମାନଙ୍କରେ ଏହି ରୋଗର ବ୍ୟାପକତା ବେଶୀ । ହିସାବ କରି ଦେଖାଯାଇଛି ଯେ, ପଞ୍ଜାବର ପ୍ରାୟ ଶତକଡ଼ା ୪୫ରୁ ୭୦ ଜଣ ଅଧିବାସୀ ଏହି ରୋଗ ଦ୍ୱାରା ଆକ୍ରାନ୍ତ । ଉତ୍ତରପ୍ରଦେଶର ଗାଁଗହଳିରେ ପ୍ରାୟ ଶେକଡ଼ା ୨୫ ଜଣ ଏବଂ ଗଡ଼ୱାଲ୍ ଓ ଆଲମୋଡ଼ାର ପାର୍ବତ୍ୟ ଅଞ୍ଚଳରେ ଏହି ରୋଗର ପ୍ରାଦୁର୍ଭାବ ଅଧିକ । ଉପରୋକ୍ତ ହିସାବରୁ ଏହି ରୋଗର ବ୍ୟାପକତା ସହଜରେ ଅନୁମେୟ ।

୪ । ଏହି ରୋଗର ମୌଳିକ କାରଣ, କିପରି ଏହା ସାଧାରଣତଃ ପ୍ରଥମେ ଆକ୍ରମଣ କରେ ଓ କିପରି ବ୍ୟାପେ, ସେ ସମ୍ବନ୍ଧରେ କିଛି ଆଲୋଚନା କରାଯାଉ । ଯଦିଓ 'ଟ୍ରାକୋମା'ରୋଗର ମୌଳିକ

ଜୀବାଣୁ ଏ ପର୍ଯ୍ୟନ୍ତ ନିର୍ଦ୍ଦିଷ୍ଟଭାବରେ ସ୍ଥିର କରାଯାଇ ପାରିନାହିଁ, ତଥାପି ଏହା ପ୍ରତ୍ୟକ୍ଷଭାବରେ ଅନୁମିତ ହୁଏ ଯେ ଏହି ରୋଗ ଗୋଟିଏ ବିଷାକ୍ତ ଭାଇରସ ଦ୍ୱାରା ସଂକ୍ରମିତ ହୋଇ ଘୁରିଆସୁଛି ବୋଧେ । ଏହି ରୋଗର ବିଷ ଲାଗିଥିବା ଅନ୍ୟ ଲୋକର ଅଙ୍ଗୁଳି, ତଉଲିଆ, ଗାମୁଛା, ରୁମାଲ ଓ ହାତମୁହଁ ଧୋଇବା କୁଣ୍ଡ ବ୍ୟବହାର କରିବା ଦ୍ୱାରା ଏବଂ ମାଛିମାନଙ୍କ ଦ୍ୱାରା ଏ ରୋଗ ଜଣଙ୍କଠାରୁ ଅନ୍ୟ ଜଣଙ୍କଠାକୁ ଡେଇଁଥାଏ । ରୋଗୀ ସହିତ ଘନିଷ୍ଠ ସମ୍ପର୍କରେ ଆସିବା ଦ୍ୱାରା ଏ ରୋଗ ଡେଇଁଆସେ ଏବଂ ଏହା ପ୍ରାୟତଃ ଆବର୍ଜନା ଏବଂ ଅସ୍ୱାସ୍ଥ୍ୟକର ପରିସ୍ଥିତିଯୋଗୁଁ ପ୍ରସାର ଲାଭ କରିଥାଏ । ଉଷ୍ଣ ଏବଂ ଆର୍ଦ୍ର ଜଳବାୟୁରେ ଏହାର ପ୍ରସାର ବଢ଼େ ଓ ଏହାର କାରଣ ହେଉଛି ‘ଟ୍ରାକୋମା’ର ବିଷାକ୍ତ ଜୀବାଣୁ ଗୁଡ଼ିକ ଏହି ଜଳବାୟୁରେ ସହଜରେ ନଷ୍ଟ ହୁଅନ୍ତି ନାହିଁ ।

୫ । ଭାରତୀୟ ସୈନ୍ୟବାହିନୀପକ୍ଷେ ଏ ରୋଗ କେତେ ଦୂର ମାରାତ୍ମକ ତା'ହା ନିମ୍ନଲିଖିତ ଘଟଣାବଳୀରୁ ଅନୁମେୟ । ବିଗତ ୩ ବର୍ଷଧରି କେବଳ ମାତ୍ର ଏହି ଟ୍ରାକୋମା ଯୋଗୁଁ ବହୁତ ଲୋକ ସୈନ୍ୟବାହିନୀରେ ନିଯୁକ୍ତ ହୋଇ ପାରୁନାହାନ୍ତି । ଗତ ତା ୧ । ୪ । ୪୯ ରୁ ତା ୩୧ । ୩ । ୫୨ ପର୍ଯ୍ୟନ୍ତ ଭାରତୀୟ ସୈନ୍ୟବାହିନୀରେ ଯୋଗ ଦେବା ପାଇଁ ଦରଖାସ୍ତକାରୀଙ୍କ ମଧ୍ୟରୁ ପ୍ରାୟ ୧୦,୦୦୦ରୁ ଅଧିକ ଲୋକ ଅର୍ଥାତ ସମୁଦାୟ ଦରଖାସ୍ତକାରୀଙ୍କର ଶତକଡ଼ା ୧୫.୭ ଭାଗ ଲୋକ ସୈନ୍ୟବାହିନୀ ନିମିତ୍ତ ଅନୁପଯୁକ୍ତ ବିବେଚିତ ହୋଇଥିଲେ । କେବଳ ପଞ୍ଜାବରୁ ଏହି ରୋଗପାଇଁ ଶତକଡ଼ା ୩୫ ଲୋକ ନାମଞ୍ଜୁର ହୋଇଥିଲେ । ସୈନ୍ୟବିଭାଗ ପାଇଁ ଅନୁପଯୁକ୍ତ ବିବେଚିତ ହୋଇଥିବା ଅଧିକାଂଶ ଲୋକ ଅନ୍ୟ ସମସ୍ତ ଦରକାରୀ ଦକ୍ଷତା ସତ୍ତ୍ୱେ କେବଳ ଏହି ରୋଗ ପାଇଁ ନିଯୁକ୍ତ ହୋଇ ନ ପାରୁଥିବାରୁ ସୈନ୍ୟବାହିନୀର କର୍ମକର୍ତ୍ତାଙ୍କର ଏହା ଘୋର ଚିନ୍ତାର କାରଣ ହୋଇ ପଡ଼ିଛି ଓ ଏହି ରୋଗର ଦୂରୀକରଣ ପାଇଁ ଆପ୍ରାଣ ଚେଷ୍ଟା କରାଯାଉଛି । ‘ଟ୍ରାକୋମା’ ଆକ୍ରାନ୍ତ ଲୋକଙ୍କୁ ଯେଉଁ ଅବସ୍ଥାରେ ସୈନ୍ୟବାହିନୀ ପାଇଁ ଗ୍ରହଣ କରି ହେବ ଓ କେତେବେଳେ ହେବ ନାହିଁ, ଏ ସମ୍ବନ୍ଧରେ କର୍ମକର୍ତ୍ତାମାନଙ୍କୁ ସମ୍ୟକ୍ ନିର୍ଦ୍ଦେଶ ଦିଆହୋଇ ଥିବାରୁ, ଏହି ରୋଗ ଯୋଗୁଁ ଅନୁପଯୁକ୍ତ ବିବେଚିତ ହୋଇଥିବା ଲୋକମାନଙ୍କର ସଂଖ୍ୟା ଆସ୍ତେ ଆସ୍ତେ କମିଯିବ ବୋଲି ଆଶାକରାଯାଏ ।

୬ । ସର୍ବଶେଷରେ ଏ ରୋଗରୁ ରକ୍ଷା ପାଇବା ନିମିତ୍ତ କ କ ଉପାୟ ଅବଲମ୍ବନ କରାଯିବ, ତାହା ସଂକ୍ଷେପରେ ଦିଆଗଲା । ପ୍ରଥମରେ ନିଜର ବାସସ୍ଥାନର ସ୍ୱାସ୍ଥ୍ୟକର ପରିସ୍ଥିତି ସମ୍ବନ୍ଧରେ ଯତ୍ନବାନ ହେବା ଉଚିତ ଓ ନିଜର ଘର ଜିନିଷପତ୍ର ସବୁ ପରିଷ୍କାର ପରିଚ୍ଛନ୍ନ ରଖିବା ଉଚିତ । ଦ୍ୱିତୀୟରେ ଅନ୍ୟର ତଉଲିଆ ବା ରୁମାଲ ବ୍ୟବହାର କରିବା ଅନୁଚିତ । ସାଧାରଣ ଗାଧୁଆକୁଣ୍ଡରେ ଗାଧୋଇବା ଅନୁଚିତ । ଏହି ରୋଗରେ ପୀଡ଼ିତଥିବା ବ୍ୟକ୍ତି ତାର ଗାଧୁଆକୁଣ୍ଡ ପ୍ରଭୃତି ପୃଥକ ରଖିବା ଉଚିତ । ତୃତୀୟତଃ, ଏହି ରୋଗର ଚିକିତ୍ସା କଲାବେଳେ ହାତ ଭଲଭାବରେ ନ ଧୋଇ ଆଖିରେ ମାରିବା ବିପଦଜନକ । ସାବୁନ ବ୍ୟବହାର କଲେ ଏ ରୋଗ ବଢ଼ିବାର ସୁବିଧା ବିଶେଷ ରହେ ନାହିଁ । ଚତୁର୍ଥରେ ନିଜର ରହିବା ଜାଗାକୁ ଭଲଭାବରେ ପରିଷ୍କାର ରଖିଲେ ମାଛିମାନଙ୍କ ଦ୍ୱାରା ଏ ରୋଗ ବ୍ୟାପିବାର ସମ୍ଭାବନା ଅତି କମ । ସର୍ବଶେଷରେ ଯେ କୌଣସି ଆଖିରୋଗରେ ଡାକ୍ତର ପରାମର୍ଶ ଗ୍ରହଣ କରି ସେ ଅନୁସାରେ କାର୍ଯ୍ୟ କରିବା ଉଚିତ ।

ଉପରୋକ୍ତ ନିୟମାବଳୀ ପ୍ରତି ଦୃଷ୍ଟି ରଖି କାର୍ଯ୍ୟ କଲେ ଏ ରୋଗର ପ୍ରସାର ଆସ୍ତେ ଆସ୍ତେ କମିଯିବ ଏବଂ ସଂଖ୍ୟାଧିକ ଲୋକ ସୈନ୍ୟବାହିନୀରେ ଯୋଗଦେଇ ନିଜର ଉନ୍ନତି ସଙ୍ଗେ ସଙ୍ଗେ ଦେଶର ସେବା ମଧ୍ୟ କରିପାରିବେ ।

# ଭାରତର ସ୍ୱାଧୀନତା ସଂଗ୍ରାମ

ପରାଧୀନତାର ଗର୍ଭରେ ମୁକ୍ତି ସଂଗ୍ରାମର ଜନ୍ମ ହୋଇଥାଏ । ପୃଥିବୀର ଇତିହାସ ଏ ଉକ୍ତିର ସତ୍ୟତାର ପ୍ରମାଣ । ଭାରତର ପରାଧୀନତା ବ୍ରିଟିଶ ଶାସନ ସହିତ ଆରମ୍ଭ ହୋଇ ବ୍ରିଟିଶ ଶାସନର ପରିସମାପ୍ତି ସହିତ ଶେଷ ହୋଇଛି । ଏ ଦେଶ ଉପରେ ବାରମ୍ବାର ଆକ୍ରମଣ ହୋଇଥିଲା । ଆକ୍ରମଣକାରୀମାନେ ହୁଏତ ଏ ଦେଶର କେତେକାଂଶ ଲୁଣ୍ଠନ କରି ନିଜ ଦେଶକୁ ଫେରି ଯାଇଥିଲେ କିମ୍ବା ଏ ଦେଶରେ ରହି ଏ ସଭ୍ୟତାର ବିରାଟ ଗର୍ଭରେ ବିଲୀନ ହୋଇ ଭାରତବାସୀରୂପେ ପରିଣତ ହୋଇଥିଲେ; କିନ୍ତୁ ଇତିହାସର କୌଣସି ଯୁଗରେ କୌଣସି ଆକ୍ରମଣକାରୀ ଭାରତ ପରି ଗୋଟାଏ ବିରାଟ ଦେଶକୁ ସଂଗଠିତ ଭାବରେ ନିଜ ଦେଶର ସୁଖ ସମୃଦ୍ଧି ବଢ଼ାଇବା ଉଦ୍ଦେଶ୍ୟରେ ବ୍ୟବହାର କରି ନ ଥିଲେ । ଏ କାର୍ଯ୍ୟ ବ୍ରିଟିଶ ଆରମ୍ଭ କଲେ । ସେମାନେ ନିଜ ଅସ୍ତିତ୍ୱ ବଜାଏ ରଖି ଗୋଟାଏ ଶାସକ ଜାତି ରୂପେ ଏ ଦେଶରେ ଅବତୀର୍ଣ୍ଣ ହେଲେ; ବଣିକ ବେଶରେ ଆସି ରାଜାରୂପେ ଶୋଷଣ ଆରମ୍ଭ କଲେ । ସେମାନେ ଏ ଦେଶର ସଭ୍ୟତାକୁ ବା ସମାଜକୁ ବୁଝି ପାରିଲେ ନାହିଁ । ପ୍ରଥମରୁହିଁ ଭାରତବାସୀଙ୍କୁ ନିଜ ମାନଦଣ୍ଡରେ ବିଚାର କରି ସଭ୍ୟେତର ମନେ କଲେ । ବ୍ରିଟିଶ ଶାସନର ମୂଳଦୁଆ ଦୃଢ଼କୁ ଏ ଦେଶରେ ସବୁଦିନେ ରହିବା ଉଦ୍ଦେଶ୍ୟରେ ସେମାନେ ଅଗ୍ରସର ହେଲେ । ନିଜ ଭାଷାକୁ ଏ ଦେଶରେ ଚଳାଇବା ପାଇଁ ମଧ୍ୟ ସ୍ୱାଭାବିକ ଉଦ୍ୟମ ହେଲା । ବ୍ରିଟିଶ ସାମାଜିକ ସ୍ୱାର୍ଥର ଅନୁବର୍ତ୍ତରେ ସେମାନେ ଏ ଦେଶରେ ଗୋଟାଏ ତଥାକଥିତ ଶିକ୍ଷିତ ଶ୍ରେଣୀ ଗଠନ କରିବାରେ ସମର୍ଥ ହେଲେ । ମୁଖ୍ୟତଃ ଏ ଶ୍ରେଣୀର ଲୋକ ଥିଲେ ବ୍ରିଟିଶ ଶାସନର ଦଲାଲ । ସେମାନଙ୍କ ଉଦ୍ୟମରେ ଶାସନ ଦୃଢ଼ୀଭୂତ ହୋଇ ପାରିବ ବୋଲି ବ୍ରିଟିଶମାନେ ଆଶା ପୋଷଣ କରିଥିଲେ । ଫଳରେ ଏହି ଶିକ୍ଷିତମାନେ ମଧ୍ୟ ଦେଶର ସଭ୍ୟତା-ଧାରାରୁ ବିଚ୍ଛିନ୍ନ ହୋଇ ପଡ଼ିଲେ । ପ୍ରକୃତ ପକ୍ଷରେ ବ୍ରିଟିଶ ଶାସକମାନଙ୍କୁ ବିରୋଧ ଓ ବିଦ୍ରୋହର ସମ୍ମୁଖୀନ ହେବାକୁ ପଡ଼ିଲା । ସେହିଁ ଶିକ୍ଷିତ ସମାଜ ଉପରେ ସେମାନେ ନିର୍ଭର କରିଥିଲେ ସେହିମାନଙ୍କ ନେତୃତ୍ୱରେ ବିପ୍ଳବର ନିଆଁ ଜଳି ଉଠିଲା । ଶେଷରେ ସେମାନଙ୍କୁ ନିଜର ଶାସନ ପାଟ ଛାଡ଼ି ନିଜ ଦେଶକୁ ଫେରିଯିବାକୁ ପଡ଼ିଲା । ଏହାହିଁ ହେଲା ଭାରତର ମୁକ୍ତି ସଂଗ୍ରାମର ସଂକ୍ଷିପ୍ତ ପରିଚୟ ।

## ପ୍ରଥମ ମୁକ୍ତି ସଂଗ୍ରାମ

ଏଠାରେ ଗୋଟିଏ ବିଷୟ ଲକ୍ଷ କରିବାର ଅଛି । ଇଷ୍ଟ ଇଣ୍ଡିଆ କମ୍ପାନୀର ଶାସନ ଯେତେବେଳେ ଦୃଢ଼ୀଭୂତ ହୋଇ ଯାଉଥିଲା, ଠିକ ସେହି ସମୟରେ ଭାରତର ପ୍ରଥମ ମୁକ୍ତି ସଂଗ୍ରାମ ଆରମ୍ଭ ହୋଇ ତାହାକୁ ଦୋହଲାଇ ଦେଇଥିଲା । ଇଂରେଜ ଐତିହାସିକମାନେ ଏହାକୁହିଁ 'ସିପାହୀ ବିଦ୍ରୋହ' ଆଖ୍ୟାରେ ଅଭିହିତ କରିଥିଲେ । ଏହା ୧୮୫୭ର ଘଟଣା । ଏଥିରେ ହିନ୍ଦୁ-ମୁସଲମାନ ଏକତ୍ରିତ ହୋଇ

ବ୍ରିଟିଶ ଶାସନ ବିରୁଦ୍ଧରେ ବିଦ୍ରୋହ ଘୋଷଣା କରିଥିଲେ । ଅଯୋଧ୍ୟାର ନବାବଙ୍କଠାରୁ ଝାନ୍ସୀର ରାଣୀ ଲକ୍ଷ୍ମୀ ବାଈ ଓ ଓଡ଼ିଶାର ଚନ୍ଦନ ହଜୁରି ପର୍ଯ୍ୟନ୍ତ ସମସ୍ତେ ଏ ବିପ୍ଳବର ଅଗ୍ରଣୀ ଥିଲେ । ସେମାନେ ବାହାଦୁର ଶାହାଙ୍କୁ ସମ୍ରାଟ ବୋଲି ଘୋଷଣା କରିଥିଲେ । ଦିଲ୍ଲୀ ହସ୍ତଗତ ହେବା ଉପରେ ଥିଲା । ଏହି ସମୟରେ ଘଟଣାଚକ୍ରରେ ଅଭାବନୀୟ ପରିବର୍ତ୍ତନ ଘଟିଲା । ଏ ଦେଶର କେତେକ ଲୋକଙ୍କ ସାହାଯ୍ୟରେ ବ୍ରିଟିଶ ଶାସକମାନେ ପ୍ରଥମ ମୁକ୍ତିସଂଗ୍ରାମକୁ ବ୍ୟର୍ଥ କଲେ । ବାହାଦୁର ଶାହା ବନ୍ଦୀ ଓ ତାଙ୍କ ପୁତ୍ର ନିହତ ହେଲେ; ତାନ୍ତିଆ ଟୋପୀ ଫାଶୀଖୁଣ୍ଟରେ ପ୍ରାଣ ହରାଇଲେ । ଧାରାବାହିକ ଦମନ ଫଳରେ ଦେଶର ଶତ ଶତ ଲୋକ ମୃତ୍ୟୁ ବରଣ କଲେ । ଇଂରେଜ ଶାସନ ଏଥିରୁ ବର୍ତ୍ତି ଯାଇଥିଲା; କିନ୍ତୁ ଇଷ୍ଟ ଇଣ୍ଡିଆ କମ୍ପାନୀ —'କମ୍ପାନୀ ବାହାଦୁର' ବିଦାୟ ନେଲେ ।

## ଅବସାଦର ଛାଇ

ପ୍ରଥମ ମୁକ୍ତିସଂଗ୍ରାମ ପରେ ଦେଶ ଉପରେ ଗୋଟାଏ ଅବସାଦର ଛାଇ ମାଡ଼ି ଯାଇଥିଲା । ବିଦେଶୀମାନେ ଏ ଦେଶରେ ସ୍ଥାୟୀ ହୋଇଗଲେ ବୋଲି ଧରି ନିଆଗଲା । ବିଦେଶୀମାନଙ୍କ ମନରେ ମଧ୍ୟ ନିଜର ଭବିଷ୍ୟତ୍ ବିଷୟରେ ସନ୍ଦେହ ରହିଲା ନାହିଁ । ଏହି ସମୟରେ ସ୍ୱାଧୀନତା ଯୁଦ୍ଧର ଇତିହାସରେ ଗୋଟାଏ ନୂତନ ଅଧ୍ୟାୟ ଆରମ୍ଭ । ୧୮୫୮ରେ ଭାରତ ଜାତୀୟ କଂଗ୍ରେସ ସ୍ଥାପିତ ହେଲା । ଠିକ ଏହି ସମୟରେ ମଧ୍ୟ ବ୍ରିଟିଶ ଶାସନକୁ ସୁଦୃଢ଼ କରିବା ପାଇଁ ଶିକ୍ଷା, ନ୍ୟାୟ ବିଚାର ଓ ରାଜନୀତି କ୍ଷେତ୍ରରେ ତିନୋଟି ଲେଖାଏଁ ବ୍ରିଟିଶ ଅନୁଷ୍ଠାନ ସ୍ଥାପିତ ହୋଇଥିଲା । କଲିକତା, ବୋମ୍ବେ ଓ ମାଡ୍ରାଜ ଏ ତିନୋଟି କେନ୍ଦ୍ରରେ ୧୮୫୮ରେ ତିନୋଟି ବିଶ୍ୱବିଦ୍ୟାଳୟ, ୧୮୬୮ରେ ତିନୋଟି ବ୍ୟବସ୍ଥା ସଭା ଓ ୧୮୬୧ରେ ତିନୋଟି ହାଇକୋର୍ଟ ସ୍ଥାପନ କରାଗଲା । ଏଥିରୁ ଦୁଇଟି ଫଳ ଫଳିଲା—କେତେକ ଲୋକ ବ୍ରିଟିଶ ସରକାରରେ ସମ୍ମାନାସ୍ପଦ ଆସନ ଲାଭ କରି ବ୍ରିଟିଶ ରାଜାଙ୍କ ପ୍ରତି ଅନୁରକ୍ତ ହୋଇ ରହିଲେ, ଶିକ୍ଷାଲାଭ କରିଥିବା ଆଉ କେତେକ ଲୋକଙ୍କ ମନରେ ଅଶାନ୍ତିର ନିଆଁ କୁହୁଳିଲା । ସେମାନେ ଗୁପ୍ତ ସମିତିମାନ ଗଠନ କରି ବୋମା ପିସ୍ତଲ ସାହାଯ୍ୟରେ ହତ୍ୟାବିଭୀଷିକା ସୃଷ୍ଟି କରିବାଦ୍ୱାରା ବ୍ରିଟିଶ ଶାସନ-ଗୋଷ୍ଠୀକୁ ଏ ଦେଶରୁ ବିଦାୟ କରିବା ପାଇଁ ଉଦ୍ୟମ କଲେ ।

## କଂଗ୍ରେସ

କଂଗ୍ରେସ ଏ ଦୁଇ ପଥ ମଝିରେ ଛିଡ଼ାହୋଇ ସେ ସମୟରେ ଜାତୀୟ ଦାବି ବୋଲି ଯାହା ମନେ କରାଯାଉଥିଲା, ସେ ବିଷୟରେ ଜନମତ ସଂଗଠିତ କରୁଥିଲା । କଂଗ୍ରେସ ଅଧିବେଶନ ସମୟରେ ଭାରତର ବିଭିନ୍ନ ଅଞ୍ଚଳରୁ ପ୍ରତିନିଧିମାନେ ସମବେତ ହେଉଥିଲେ । ତାହା ଜାତି ଭିତରେ ସାମାଜିକ ଓ ରାଜନୈତିକ ଜୀବନ ଗଠନ କରିବାରେ ସାହାଯ୍ୟ କରୁଥିଲା ।

କହିବାକୁ ଗଲେ ବ୍ରିଟିଶ ଗଭର୍ଣ୍ଣର-ଜେନେରେଲ ଲର୍ଡ ଡଫରିନ୍ ଓ ବ୍ରିଟିଶ ସିଭିଲିୟାନ ଏ. ଓ. ହ୍ୟୁମଙ୍କ ଆନୁକୂଲ୍ୟରେ କଂଗ୍ରେସ ଆରମ୍ଭ ହୋଇଥିଲା । କିନ୍ତୁ ୧୮୮୮ ବେଳକୁ ବ୍ରିଟିଶ କର୍ତ୍ତୃପକ୍ଷ ମନେ କଲେ ଯେ ଏ ଅନୁଷ୍ଠାନ ରାଜଦ୍ରୋହ ପ୍ରଚାରରେ ଅଗ୍ରଣୀ ହୋଇଛି । ସେହି ସମୟରୁ କଂଗ୍ରେସ ଯେ ରାଜଦ୍ରୋହୀ ସଂଗଠନ ନୁହେଁ ତାହା ପ୍ରମାଣିତ କରିବା ପାଇଁ ଉଦ୍ୟମ କରିବାକୁ ହୋଇଥିଲା । ରାଜଭକ୍ତିମୂଳକ ପ୍ରସ୍ତାବ ବରାବର ଅଧିବେଶନରେ ଗୃହୀତ ହେଲେ ମଧ୍ୟ କଂଗ୍ରେସ ଯେ ପ୍ରକୃତ ରାଜାନୁରକ୍ତ, ଏ ବିଶ୍ୱାସ ବ୍ରିଟିଶ ଶାସକ-ମାନଙ୍କର ରହିଲା ନାହିଁ । ଲୋକଙ୍କୁ ସନ୍ତୁଷ୍ଟ ରଖି

କଂଗ୍ରେସ ଆନ୍ଦୋଳନର ମୂଳଭିତ୍ତିକୁ ଦୁର୍ବଳ କରିଦେବା ଉଦ୍ଦେଶ୍ୟରେ ଏହି ସମୟରେ ବ୍ରିଟିଶ ଶାସକମାନେ ଉଦାମାନ୍ତନ ବ୍ୟବସ୍ଥା ସଙ୍ଗରେ ୬/୭ ଜଣ ଲେଖାଏଁ ନିର୍ବାଚିତ ପ୍ରତିନିଧିଙ୍କୁ ସ୍ଥାନ ଦେବାର ବ୍ୟବସ୍ଥା କଲେ । ଏହି ନିର୍ବାଚିତ ପ୍ରତିନିଧିଙ୍କ ସଂଖ୍ୟା କ୍ରମେ କ୍ରମେ ବଢ଼ାଇ ଦିଆଗଲା । ୧୯୦୮ର ମିଣ୍ଟୋ-ମର୍ଲେ ସଂସ୍କାର ଓ ୧୯୧୯ର ମଣ୍ଟେଗୁ-ଚେମସଫୋର୍ଡ ସଂସ୍କାର ବ୍ୟବସ୍ଥା ଏହାର ପ୍ରମାଣ ।

## ସଂସ୍କାର ଓ ଦମନ

ଏକ ପଟରେ ନିର୍ବାଚିତ ପ୍ରତିନିଧିମାନଙ୍କୁ ଶାସନ ବ୍ୟବସ୍ଥା ସହିତ ସମ୍ପୃକ୍ତ କରିବା ସଙ୍ଗେ ସଙ୍ଗେ ଅପର ପଟରେ ନାନା ଦମନମୂଳକ ବ୍ୟବସ୍ଥା ଚାଲିଲା । ୧୮୯୯-୧୯୦୭ ପର୍ଯ୍ୟନ୍ତ ଲର୍ଡ କର୍ଜନ ଭାରତର ବଡ଼ଲାଟ ଥିଲେ । ତାଙ୍କ କାର୍ଯ୍ୟକାଳ ମଧ୍ୟରେ ଅକ୍ଟୋବର ୧୬ ତାରିଖ, ୧୯୦୫ରେ ବଙ୍ଗ-ବିଚ୍ଛେଦ ବ୍ୟବସ୍ଥା ଘୋଷଣା କରାଗଲା । ଏହା ଫଳରେ ଦେଶରେ ଗୋଟିଏ ନୂଆ ଅଧ୍ୟାୟ ଜନ୍ମଲାଭ କଲା; ଦେଶବାସୀ ଗୋଟିଏ ନୂଆ ରାଜନୈତିକ ଜାଗରଣର ଚିହ୍ନ ଫୁଟି ଉଠିଲା । ଅବସ୍ଥା ସମ୍ଭାଳି ନେବା ପାଇଁ ବ୍ରିଟିଶ ସରକାର ଲର୍ଡ କର୍ଜନଙ୍କ ପରେ ଲର୍ଡ ମିଣ୍ଟୋଙ୍କୁ ପଠାଇଲେ; କିନ୍ତୁ ସେଥିରେ ମଧ୍ୟ ଆଶାନୁରୂପ ଫଳ ଲାଭ ହେଲା ନାହିଁ । ସେତେବେଳକୁ ଭାରତର ବାସ୍ତବ ପରିସ୍ଥିତି ଭିନ୍ନ ଧାର ଧରିଥିଲା । ଜାତିର ରାଜନୈତିକ ଦାବୀ ଯେତିକି ବଢ଼ିଗଲା ବ୍ରିଟିଶ ସରକାର ତାହାର ସମ୍ମୁଖୀନ ହେବାପାଇଁ ସେହି ଅନୁପାତରେ ଜୋରସୋରରେ ଦ୍ୱୈତ-ନୀତି ଚଳାଇଲେ । ଏ ନୀତିର ଦୁଇଟି ଦିଗ । ଏକ ପଟରେ ଭାରତବାସୀଙ୍କ ହାତକୁ ସାମାନ୍ୟ ରାଜନୈତିକ ଅଧିକାର ଦିଆଯିବ; ଅନ୍ୟ ପଟରେ ଜାତୀୟ ଜାଗରଣକୁ ଦବାଇ ଦେବା ପାଇଁ ସେହି ପରିମାଣରେ ଦମନ ଚଳାଇବାକୁ ହେବ । ବ୍ରିଟିଶମାନେ ଭାରତ ଛାଡ଼ି ଯିବା ପର୍ଯ୍ୟନ୍ତ ଏ ନୀତି ଧରି ଚଳିଲେ । ଶେଷବେଳେ ଦେଶକୁ ଦୁଇଖଣ୍ଡ କରି ଭାରତ ଓ ପାକିସ୍ତାନ ସୃଷ୍ଟି କଲେ । ଏହା ଏ ନୀତିର ଚରମ ପରିଣତି ।

## ବଙ୍ଗ-ଭଙ୍ଗ

ବଙ୍ଗ-ଭଙ୍ଗ ପରେ ୧୯୦୫ଠାରୁ ୧୯୧୨ ମଧ୍ୟରେ ଦମନ ନୀତି ଭୀଷଣ ଆକାର ଧାରଣ କରିଥିଲା । ୧୯୦୮ରେ ରାଜଦ୍ରୋହାତ୍ମକ ସଭା ଆଇନ, ୧୯୧୦ରେ ପ୍ରେସ ଆଇନ ଓ ୧୯୧୨ରେ ଫୌଜଦାରୀ (ସଂଶୋଧନ) ଆଇନପ୍ରଣୟନ କରାଯାଇଥିଲା । ଅଥଚ ଏହି ସମୟରେ ଶାସନ ସଂସ୍କାରର ଦିଗରୁ ଦୟା ଭାରତକୁ ଦିଆଯାଇଥିଲା ।

## ନବ ଜାଗରଣର ତରଙ୍ଗ

ଏହି ସମୟରେ ଭାରତର ଚାରିଆଡ଼େ ନବ-ଜାଗରଣର ତରଙ୍ଗ ଖେଳି ଯାଇଥିଲା । ୧୯୦୮ରୁ ୧୯୧୦ରେ ସନ୍ତ୍ରାସମୂଳକ କାର୍ଯ୍ୟକଳାପ ନାନା କ୍ଷେତ୍ରରେ ଆତ୍ମପ୍ରକାଶ କରିଥିଲା । ୧୯୦୮ ଖ୍ରୀଷ୍ଟାବ୍ଦ ଜୁଲାଇ ମାସ ୧୮ ତାରିଖରେ ଲୋକମାନ୍ୟ ତିଳକଙ୍କୁ ୬ ବର୍ଷ ସଶ୍ରମ କାରାଦଣ୍ଡର ହୁକୁମ ହୋଇଥିଲା । ଖବର କାଗଜ ଗୁଡ଼ିକ ମୁହଁରେ ତୁଣ୍ଡି ବାନ୍ଧି ଦିଆଯାଇଥିଲା । ସଭା ସମିତିଗୁଡ଼ିକୁ ବେଆଇନ ଘୋଷଣା କରାଯାଇଥିଲା । ୧୯୧୨ରେ ଦିଲ୍ଲୀର ଚାନ୍ଦନୀଚୌକଠାରେ ତତ୍କାଳୀନ ଭାଇସ୍‌ରୟ ଲର୍ଡ ହାର୍ଡିଞ୍ଜଙ୍କ ଉପରେ ବୋମାମାଡ଼ ହୋଇଥିଲା, ତାହା-ଫଳରେ ସେ ଆହତ ହୋଇଥିଲେ । ସେହି ବର୍ଷ ପଞ୍ଚମ ଜର୍ଜ ସିଂହାସନରେ ଅଭିଷିକ୍ତ ହେଲେ । ଏ ସୁବିଧା ଗ୍ରହଣ କରି ବ୍ରିଟିଶ ସରକାର ପୂର୍ବ ଓ ପଶ୍ଚିମ ଉଭୟ ବଙ୍ଗକୁ ମିଶାଇ ଦେଲେ; ବିହାର ଓ ଓଡ଼ିଶାକୁ ବଙ୍ଗଳାରୁ କାଢ଼ି ଆଣି ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ ସ୍ଥାପନ କଲେ । ଏହି ସୁଯୋଗ ସମୟରେ ଭାଷା, ସଂସ୍କୃତି, ଶାସନ ସୁବିଧା ଓ ଆର୍ଥନୈତିକ ସମ୍ପର୍କ ଭିତ୍ତିରେ ପ୍ରଦେଶ ଗଠନ ନୀତି ଓ ପ୍ରାଦେଶିକ ସ୍ୱତନ୍ତ୍ରତା ନୀତି ସ୍ଥିର କଲେ ।

## ଲୋକମାନ୍ୟ ତିଳକ

ଲୋକମାନ୍ୟ ତିଳକ ୧୯୧୬ ଅପ୍ରେଲ ମାସରେ ମହାରାଷ୍ଟ୍ର ହୋମରୁଲ ଲିଗ ସ୍ଥାପନ କରିଥିଲେ । ସେହି ବର୍ଷ ଅକ୍ଟୋବର ମାସରେ ଆନି ବେଶାନ୍ତଙ୍କ ନେତୃତ୍ୱରେ ନିଖିଳ ଭାରତ ହୋମ୍‌ରୁଲ ଲିଗ୍ ସ୍ଥାପିତ ହେଲା । ହୋମରୁଲ ଆନ୍ଦୋଳନ କ୍ରମେ କ୍ରମେ ବୃଦ୍ଧି ପାଇଥିଲା । ବ୍ରିଟିଶ ସରକାର ଆତଙ୍କିତ ହେଲେ । ତାହା ଫଳରେ ଦୁଇଜଣ ସହକର୍ମୀଙ୍କ ସହ ମିସେସ୍ ବେଶାନ୍ତଙ୍କୁ ଉଟକାମଣ୍ଡଳଠାରେ ୧୯୧୭ ଜୁନ ମାସ ୧୪ ତାରିଖଠାରୁ ନଭେମ୍ବର ୧୪ ତାରିଖ ପର୍ଯ୍ୟନ୍ତ ଅଟକ ବନ୍ଦୀ କରି ରଖାଗଲା ।

## ପ୍ରଥମ ମହାଯୁଦ୍ଧ

ଏ ସମୟରେ ପ୍ରଥମ ମହାଯୁଦ୍ଧ ଚାଲିଥିଲା । କେତେ ଭାରତୀୟ ବିପ୍ଳବୀ ଦେଶ ବାହାରୁ ଅସ୍ତ୍ରଶସ୍ତ୍ର ଆମଦାନି କରି ଏ ଦେଶରେ ବିପ୍ଳବ ନିଆଁ ଜଳାଇବା ପାଇଁ ଉଦ୍ୟମ କରିଥିଲେ । ଏମାନଙ୍କ ମଧ୍ୟରୁ ଆଉ କେତେ ଜର୍ମାନୀ ସହିତ ବନ୍ଧୁତ୍ୱ ସ୍ଥାପନ କରିଥିଲେ । ଏହି ସମୟରେ ମେସୋପଟାମିଆ ଦୁର୍ଘଟଣା ଘଟିଲା । ଅଷ୍ଟିନ୍ ଚେମ୍ବରଲେନ୍ ଭାରତ ସଚିବ ପଦରୁ ଇସ୍ତଫା ଦେଲେ । ତାଙ୍କ ସ୍ଥାନରେ ମଣ୍ଟେଗୁ ନିଯୁକ୍ତ ହେଲେ । ସେ ଭାରତକୁ ଆସି ଅନୁସନ୍ଧାନ ଚଳାଇଲେ । ସେତେବେଳେ ଲର୍ଡ଼ ଚେମ୍‌ସଫୋର୍ଡ଼ ବଡ଼ଲାଟ ଥିଲେ । ସେ ଦୁହେଁ ମିଶି ଭାରତରେ ଶାସନ ସଂସ୍କାର ସମ୍ବନ୍ଧରେ ଗୋଟିଏ ରିପୋର୍ଟ ଦେଲେ । ତାହା ୧୯୧୮ ଜୁନ ମାସରେ ପ୍ରକାଶିତ ହୋଇଥିଲା । ମଣ୍ଟେଗୁ-ଚେମ୍‌ସଫୋର୍ଡ ନାମରେ ଏ ରିପୋର୍ଟ ପରିଚିତ । ଭାରତରେ ଦ୍ୱୈତ ଶାସନ ପ୍ରବର୍ତ୍ତିତ ହେବ ବୋଲି ଏଥିରେ ପରାମର୍ଶ ଦିଆଯାଇଥିଲା । ବ୍ରିଟିଶ ପାର୍ଲିଆମେଣ୍ଟରେ ସେ ଅନୁସାରେ ଆଇନ ଗୃହୀତ ହୋଇଗଲା ଓ ୧୯୧୯ ଡିସେମ୍ବର ମାସ ୨୩ ତାରିଖ ଦିନ ଭାରତରେ ମଣ୍ଟେଗୁ-ଚେମ୍‌ସଫୋର୍ଡ଼ ଶାସନ ସଂସ୍କାର ଚାଲୁ ହେଲା । ସେତେବେଳକୁ ମୌଲାନା ସଉକତ ଅଲି, ମହମ୍ମଦ ଅଲି ଓ ମୌଲାନା ଆଜାଦଙ୍କୁ ୪ ବର୍ଷ କାଳ ଅଟକବନ୍ଦୀ କରି ରଖାଯାଇଥିଲା । ଶାସନ ସଂସ୍କାର ଚଳବା ଦିନ ସେମାନଙ୍କୁ ମୁକ୍ତି ଦିଆଯାଇଥିଲା ।

## ଜାଲିଆନାବାଲ୍‌ବାଗ ହତ୍ୟାକାଣ୍ଡ

ଏହା ପୂର୍ବରୁ ପ୍ରଥମ ମହାଯୁଦ୍ଧ ଶେଷ ହୋଇଥିଲା । ଭାରତର ଜାତୀୟତାକୁ ଦବାଇବା ପାଇଁ ରାଉଲାଟ୍ ବିଲ୍ ଆରମ୍ଭ କରାଯାଇଥିଲା । ତାହା ପୂର୍ବରୁ ଭାରତରେ ରାଜଦ୍ରୋହର ପ୍ରସାର ବିଷୟରେ ଅନୁସନ୍ଧାନ କରିବା ପାଇଁ ଗୋଟିଏ କମିଟି ବସିଥିଲା । ଲର୍ଡ଼ ରାଉଲାଟ୍ ଏ କମିଟିର ସଭାପତି ଥିଲେ । ତେଣୁ ଏ କମିଟି ରାଉଲାଟ୍ କମିଟି ନାମରେ ପରିଚିତ । ଏ କମିଟି ଯେଉଁ ରିପୋର୍ଟ ଦେଇଥିଲେ ଭାରତର ଚାରିଆଡ଼େ ରାଜଦ୍ରୋହାତ୍ମକ ଭାବ ବ୍ୟାପିଯାଇଛି, ଏପରି କି ସ୍ୱାମୀ ବିବେକାନନ୍ଦ ମଧ୍ୟ ରାଜଦ୍ରୋହର ପ୍ରଚାର କରୁଥିଲେ ବୋଲି ସେଥିରେ ଲେଖାଥିଲା । ଏହାକୁ ଦବାଇବା ପାଇଁ ଆଇନ ପ୍ରଣୟନ କରାଯାଉ ବୋଲି ସେଥିରେ ପରାମର୍ଶ ଦିଆଯାଇଥିଲା । ତଦନୁସାରେ ଆଇନର ପାଣ୍ଡୁଲିପି ପ୍ରସ୍ତୁତ ହୋଇଥିଲା । ଏହି ରାଉଲାଟ ବିଲ୍ ବିରୁଦ୍ଧରେ ଘୋର ପ୍ରତିବାଦ ହେଲା । ଦିଲ୍ଲୀ, ପଞ୍ଜାବ ଓ ଭାରତର ଆଉ କେତେକ ସ୍ଥାନରେ ଜନତା ଉପରେ ଗୁଳି ଚାଲିଲା । ଏହି ଆନ୍ଦୋଳନ ସମୟରେ ଜାଲିଆନାବାଲାବାଗ ହତ୍ୟାକାଣ୍ଡ ଘଟିଥିଲା । ଜେନେରେଲ ଡାୟାରଙ୍କ ଦ୍ୱାରା ପରିଚାଳିତ ବ୍ରିଟିଶ ସୈନ୍ୟଙ୍କ ଗୁଳିରେ ଜାଲିଆନାବାଲାବାଗଠାରେ ହେଉଥିବା ସଭାରେ ୧୨୦୦ ଭାରତୀୟ ମରି ଶୋଇଲେ । ସେ ସମୟର ପଞ୍ଜାବର ଲାଟ ଘୋଷଣା କଲେ, "ସରକାର ଜବରଦସ୍ତ ହଏ !"

## ମହାତ୍ମା ଗାନ୍ଧୀଙ୍କ ଆବିର୍ଭାବ

ଏହି ସମୟରେ ଭାରତର ରାଜନୀତି କ୍ଷେତ୍ରରେ ମହାତ୍ମା ଗାନ୍ଧୀଙ୍କ ଆବିର୍ଭାବ । ଦକ୍ଷିଣ ଆଫ୍ରିକାର ଟ୍ରାନ୍ସଭାଲଠାରେ ସତ୍ୟାଗ୍ରହର ଯେଉଁ ପରୀକ୍ଷାରେ ସେ କୃତକାର୍ଯ୍ୟ ହୋଇଥିଲେ, ସେତେବେଳକୁ ଭାରତର ଖଇରା, ବୋରସାଦ ଓ ଚମ୍ପାରଣଠାରେ ସେହି ପରୀକ୍ଷା ଚଳାଇ ସେ ଜୟଯୁକ୍ତ ହୋଇଥିଲେ । ୧୯୧୯ ରେ ଅମୃତସରଠାରେ କଂଗ୍ରେସ ଅଧିବେଶନ ହେଲା । ଲୋକେ ଯେଉଁ ହିଂସାତ୍ମକ କାର୍ଯ୍ୟ କରିଥିଲେ ତାହାର ନିନ୍ଦାବାଦ କରି ଗାନ୍ଧୀଜୀ ଗୋଟିଏ ପ୍ରସ୍ତାବ ଆଗତ କରିଥିଲେ । ଏହା ବିରୁଦ୍ଧରେ ଘୋର ପ୍ରତିବାଦ ଉଠିଲା, କିନ୍ତୁ ସର୍ବଶେଷରେ ଗାନ୍ଧୀଜୀଙ୍କ ପ୍ରସ୍ତାବ ଗୃହୀତ ହୋଇ ପାରିଥିଲା ।

## ଅସହଯୋଗ ଆନ୍ଦୋଳନ

ଜାଲିଆନାୱାଲାବାଗ ହତ୍ୟାକାଣ୍ଡ ଫଳରେ ଲୋକେ ଉତ୍ତେଜିତ ହୋଇଥିଲେ, ଖିଲାଫତ୍ ପ୍ରଶ୍ନ ମୁସଲମାନମାନଙ୍କୁ ଉତ୍କ୍ଷିପ୍ତ କରି ପକାଇଲା । ହିନ୍ଦୁ-ମୁସଲମାନ ମିଶି ୧୯୨୦ ଅପ୍ରେଲ ମାସ ୯ ତାରିଖ ଦିନ ସରକାରଙ୍କ ସହିତ ଅସହଯୋଗ କରିବା ପାଇଁ ବ୍ୟବସ୍ଥା କଲେ । ୧୯୨୦ ଅଗଷ୍ଟ ମାସ ୧ ତାରିଖ ଦିନ ଲୋକମାନ୍ୟ ତିଳକ ସ୍ୱର୍ଗାରୋହଣ କଲେ; ଆନ୍ଦୋଳନର ନେତୃତ୍ୱ ଭାର ଗାନ୍ଧୀଜୀଙ୍କ ଉପରେ ପଡ଼ିଲା । ୧୯୨୦ ଖ୍ରୀଷ୍ଟାବ୍ଦ ସେପଟେମ୍ବର ମାସରେ କଲିକତାଠାରେ କଂଗ୍ରେସର ଗୋଟିଏ ବିଶେଷ ଅଧିବେଶନ ଅନୁଷ୍ଠିତ ହୋଇଥିଲା । ଏଥିରେ ବ୍ରିଟିଶ ସରକାରଙ୍କ ସ୍କୁଲ କଲେଜ, କଚେରୀ ଓ କାଉନ୍‌ସିଲ ସହିତ ଅସହଯୋଗ କରାଯିବ ବୋଲି ପ୍ରସ୍ତାବ ଗୃହୀତ ହେଲା । ଏହିଠାରୁ ଭାରତର ରାଜନୀତିରେ ଏକ ନୂତନ ଯୁଗ—ସ୍ୱରାଜ୍ୟ ପ୍ରୟାସ ଆରମ୍ଭ ହେଲା ।

ଏହା ପରେ ୧୯୨୦ ଖ୍ରୀଷ୍ଟାବ୍ଦ ଡିସେମ୍ବର ମାସରେ ନାଗପୁରଠାରେ କଂଗ୍ରେସ ଅଧିବେଶନ ହେଲା । ସେଥିରେ କଂଗ୍ରେସର ପୁରୁଣା ଉଦ୍ଦେଶ୍ୟ ବଦଳରେ 'ଶାନ୍ତିପୂର୍ଣ୍ଣ ଓ ନ୍ୟାୟସଙ୍ଗତ ଉପାୟରେ ଭାରତବାସୀଙ୍କ ଦ୍ୱାରା ସ୍ୱରାଜ୍ୟ ପ୍ରାପ୍ତି' ନୂତନ ଉଦ୍ଦେଶ୍ୟ ରୂପେ ଗୃହୀତ ହେଲା ।

## ସ୍ୱଦେଶୀ

ସେହି ସମୟଠାରୁ ହାତକଟା ହାତବୁଣା ଲୁଗା ପିନ୍ଧିବା ଓ ଗାଁଗହଳରେ ଉତ୍ପନ୍ନ ହେଉଥିବା ଜିନିଷ ବ୍ୟବହାର କରିବା ଅର୍ଥ "ସ୍ୱଦେଶୀ ବ୍ରତ" ବୋଲି ଗ୍ରହଣ କରାଗଲା । ବିଦେଶୀ ବର୍ଜ୍ଜନ ଓ ଜାତୀୟ ଶିକ୍ଷାର ପ୍ରସାର ବ୍ୟବସ୍ଥା ହେଲା । କଂଗ୍ରେସ ଲୋକେ ବ୍ୟବସ୍ଥା ସଭାରେ ପ୍ରବେଶ କଲେ ନାହିଁ । ୧୯୨୧ରେ ତଦାନୀନ୍ତନ ବ୍ରିଟିଶ ଯୁବରାଜ ଯେତେବେଳେ ଭାରତ ପରିଦର୍ଶନ କଲେ, ସେତେବେଳେ ସେ ସମ୍ବର୍ଦ୍ଧନାର ସମସ୍ତ ଅନୁଷ୍ଠାନକୁ ବର୍ଜ୍ଜନ କରାଯାଇଥିଲା । ଏହି ସମୟରେ ପ୍ରଥମ ସତ୍ୟାଗ୍ରହର ସୂତ୍ରପାତ ହୋଇଥିଲା । ଗୁଜରାଟର ବର୍ଦ୍ଦୋଲୀ ଓ ବୋରସାଦ ତାଲୁକାରେ ଗାନ୍ଧୀଜୀ ଖଜଣା ବନ୍ଦ ଆକାରରେ ବ୍ୟାପକ "ଆଇନ ଅମାନ୍ୟ ଆନ୍ଦୋଳନ" ଆରମ୍ଭ କରିବେ ବୋଲି ସ୍ଥିର କରିଥିଲେ । ୧୯୨୧ରେ ଅହମଦାବାଦଠାରେ ଯେଉଁ କଂଗ୍ରେସ ଅଧିବେଶନ ହୋଇଥିଲା, ସେଥିରେ ଏ ପ୍ରସ୍ତାବ ଗୃହୀତ ହୋଇଥିଲା । ଏ ଅଧିବେଶନ ପୂର୍ବରୁ ଭାରତର ସେ ସମୟର ବଡ଼ଲାଟ ଲର୍ଡ଼ ରିଡ଼ିଂ ଓ ଗାନ୍ଧୀଜୀଙ୍କ ଭିତରେ କେତେକ ଆଲୋଚନା ହୋଇଥିଲା, କିନ୍ତୁ ସେଥିରେ କିଛି ଲାଭ ହେଲା ନାହିଁ । ପରେ ଲର୍ଡ଼ ରିଡ଼ିଂ ବୋମ୍ବେଠାରେ ଏକ ସଭାରେ ମାନିଥିଲେ ଯେ, "ଅସହଯୋଗ ଆନ୍ଦୋଳନ କୃତକାର୍ଯ୍ୟ ହେବାର ଅତି ନିକଟରେ ପହଞ୍ଚିଥିଲା—It was within an inch of success."

## ଚୌରୀଚୌରା

ଏହି ସମୟରେ ଚୌରୀଚୌରା ଘଟଣା ଘଟିଲା । ଉତ୍ତର ପ୍ରଦେଶ ଗୋରଖପୁର ଜିଲ୍ଲାର ଗୋଟିଏ ଗ୍ରାମରେ ଲୋକେ ଉତ୍କ୍ଷିପ୍ତ ହୋଇ ୨୧ ଜଣ କନେଷ୍ଟବଲ

ଓ ଜଣେ ସବ୍-ଇନସପେକ୍ଟରଙ୍କୁ ଥାନା ଭିତରେ ଜୀଅନ୍ତା ପୋଡ଼ି ମାରି ପକାଇଲେ । ଏ ହିଂସାତ୍ମକ ଘଟଣା ଯୋଗୁଁ ଗାନ୍ଧୀଜୀ 'ଖଜଣା ବନ୍ଦ ଆନ୍ଦୋଳନ' ବନ୍ଦ କରି ଦେଲେ । ଏହା ପରେ ପରେ ତାଙ୍କୁ ଗିରଫ କରି ଛଅ ବର୍ଷ ଜେଲଦଣ୍ଡ ଦିଆଯାଇଥିଲା ।

## ବ୍ୟବସ୍ଥା ସଭା ପ୍ରବେଶ

ଗାନ୍ଧୀଜୀଙ୍କ ଅନୁପସ୍ଥିତିରେ ଆଇନ ଅମାନ୍ୟ ଆନ୍ଦୋଳନ ଚାଲିବ କି କଂଗ୍ରେସର ଲୋକେ ବ୍ୟବସ୍ଥା ସଭାରେ ପଶି ବିରୋଧ ସୃଷ୍ଟି କରିବେ, ଏ ବିଷୟ ନେଇ କଂଗ୍ରେସ ଭିତରେ ଘୋର ମତଭେଦ ଉପସ୍ଥିତ ହେଲା । ଏ ପ୍ରଶ୍ନର ସମାଧାନ କରିବାପାଇଁ ଆଇନ ଅମାନ୍ୟ ଅନୁସନ୍ଧାନ କମିଟି ନିଯୁକ୍ତ ହେଲା । ଭାରତର ବିଭିନ୍ନ ପ୍ରଦେଶରେ ଭ୍ରମଣ କରିବା ପରେ ଏ କମିଟି ଯେଉଁ ମତ ଦେଲେ, ସେଥିରେ ମଧ୍ୟ କିଛି ନିଷ୍ପତ୍ତି ହୋଇପାରିଲା ନାହିଁ । ୧୯୨୩ ସେପ୍ଟେମ୍ବର ମାସରେ ଦିଲ୍ଲୀଠାରେ କଂଗ୍ରେସର ଗୋଟିଏ ବିଶେଷ ଅଧିବେଶନ ବସିଲା । ବ୍ୟବସ୍ଥା ସଭାମାନଙ୍କରେ ପ୍ରବେଶ କରିବା ପାଇଁ ସେ ବୈଠକରେ ଅନୁମତି ଦିଆଗଲା । ୧୯୨୩ ଡିସେମ୍ବର ମାସରେ କାକିନାଡ଼ାଠାରେ କଂଗ୍ରେସ ଅଧିବେଶନ ପୁଣି ବସିଲା । ବ୍ୟବସ୍ଥା ସଭାରେ ପ୍ରବେଶ କରିବା ପ୍ରସ୍ତାବ ଏଥିରେ ଅନୁମୋଦନ କରାଯାଇଥିଲା । ୧୯୨୪ ଫେବୃଆରି ମାସ ୪ ତାରିଖ ଦିନ ଗାନ୍ଧୀଜୀଙ୍କୁ ମୁକ୍ତି ଦିଆଯାଇଥିଲା । ସେ ବର୍ଷ ଡିସେମ୍ବର ମାସରେ ବେଲଗାଓଁଠାରେ ଯେଉଁ କଂଗ୍ରେସ ଅଧିବେଶନ ହୋଇଥିଲା, ସେଥିରେ ସେ ସଭାପତି ଆସନ ଗ୍ରହଣ କରିଥିଲେ । ଆଇନ ଅମାନ୍ୟ ଆନ୍ଦୋଳନ ଚଳାଇବା ପାଇଁ ଦେଶ ପ୍ରସ୍ତୁତ ନ ଥିଲା । ୧୯୨୫ରେ କାନପୁରଠାରେ କଂଗ୍ରେସର ଯେଉଁ ଅଧିବେଶନ ହେଲା ସେଥିରେ ବ୍ୟବସ୍ଥା ସଭା ପ୍ରବେଶ ପ୍ରସ୍ତାବ ପୁଣି ସ୍ୱୀକୃତ ହୋଇଥିଲା । ସେତେବେଳକୁ କଂଗ୍ରେସ ଭିତରେ ଦଳେ ବ୍ୟବସ୍ଥାସଭା ପ୍ରବେଶର ପକ୍ଷପାତୀ, ଆଉ ଦଳେ ଗଠନାତ୍ମକ କାର୍ଯ୍ୟକ୍ରମ ଓ ଆଇନ ଅମାନ୍ୟ ଆନ୍ଦୋଳନର ସମର୍ଥକ, ଏହିପରି ଦୁଇଟି ଦଳ ଥିଲେ । ପ୍ରଥମ ଦଳର ନେତୃସ୍ଥାନୀୟ ବ୍ୟକ୍ତିଙ୍କ ମଧ୍ୟରେ ଦେଶବନ୍ଧୁ ଚିତ୍ତରଞ୍ଜନ ଦାସ ଓ ପଣ୍ଡିତ ମୋତିଲାଲ ନେହେରୁ ଓ ଦ୍ୱିତୀୟ ଦଳର ନେତା ଶ୍ରୀ ଚକ୍ରବର୍ତ୍ତୀ ରାଜଗୋପାଳାଚାରୀ ଓ ସର୍ଦ୍ଦାର ବଲ୍ଲଭଭାଇ ପଟେଲ ଥିଲେ । ବ୍ୟବସ୍ଥା ସଭାରେ ପ୍ରବେଶ କରିବା ଦ୍ୱାରା ସ୍ୱରାଜ୍ୟର ପଥ ସୁଗମ ହେବ ବୋଲି ଯେଉଁମାନେ ବିଶ୍ୱାସ କରୁଥିଲେ, ବର୍ଷ କେତୋଟା ଭିତରେ ସେମାନଙ୍କର ଆଖି ଖୋଲିଗଲା । ୧୯୩୦ରେ ବ୍ୟବସ୍ଥା ସଭା ଛାଡ଼ି ଚାଲି ଆସିବା ପାଇଁ ଯେଉଁ ନିର୍ଦ୍ଦେଶମୂଳକ ପ୍ରସ୍ତାବ କଂଗ୍ରେସର ଗୃହୀତ ହୋଇଥିଲା, ପଣ୍ଡିତ ମୋତିଲାଲ ନେହେରୁ ତାହାର ସ୍ରଷ୍ଟା ଥିଲେ । ତାହା ପୂର୍ବରୁ ୧୯୨୮ରେ କଂଗ୍ରେସର ଯେଉଁ ଅଧିବେଶନ ହୋଇଥିଲା, ସେଥିରେ ବର୍ଷକ ଭିତରେ ଭାରତରେ ଔପନିବେଶିକ ସ୍ୱାୟତ୍ତ ଶାସନ ସ୍ଥାପନ କରନ୍ତୁ ବୋଲି ବ୍ରିଟିଶ ସରକାରଙ୍କୁ ନୋଟିସ ଦ୍ୱାରା ଜଣାଇ ଦିଆଯାଇଥିଲା । ସେଥିରୁ କିଛି ଫଳ ହେଲା ନାହିଁ । ବର୍ଷ ପୂରିବାର ଦୁଇ ଦିନ ପୂର୍ବରୁ ଅର୍ଥାତ ୧୯୨୯ ଡିସେମ୍ବର ମାସ ୨୩ ତାରିଖ ଦିନ ଗାନ୍ଧୀଜୀ ସେ ସମୟର ବଡ଼ଲାଟ ଲର୍ଡ ଇରୱଇନଙ୍କ ସହିତ ଦେଖା କରି ଶେଷ ଚେଷ୍ଟା କରିଥିଲେ । ତାହା ମଧ୍ୟ ବିଫଳ ହେଲା । ଦୁଇ ଦିନ ପରେ ଅର୍ଥାତ ୧୯୨୯ ଡିସେମ୍ବର ମାସ ୨୫ ତାରିଖ ଦିନ ଲାହୋର କଂଗ୍ରେସ ଅଧିବେଶନରେ ସ୍ୱାଧୀନତା ପ୍ରସ୍ତାବ ଗୃହୀତ ହେଲା ।

## ପୂର୍ଣ୍ଣ ସ୍ୱାଧୀନତା ଯୁଗ

ଏହା ପୂର୍ବରୁ କଂଗ୍ରେସର ଉଦ୍ଦେଶ୍ୟ ଥିଲା ସ୍ୱରାଜ୍ୟ ଲାଭ । ସ୍ୱରାଜର ଅର୍ଥ—ସମ୍ଭବ ହେଲେ ବ୍ରିଟିଶସାମ୍ରାଜ୍ୟ

ଭିତରେ ଥାଇ ମୁକ୍ତି ନାହିଁ; ଆବଶ୍ୟକ ହେଲେ ବ୍ରିଟିଶ ସାମ୍ରାଜ୍ୟ ବାହାରେ ସ୍ୱାଧୀନତା । ପୂର୍ଣ୍ଣ ସ୍ୱାଧୀନତା ହାସଲ ବ୍ରିଟିଶ ସାମ୍ରାଜ୍ୟ ବାହାରେ ରହିବା ସଂକଳ୍ପ ଗ୍ରହଣ କରାଯାଇଥିଲା । ସ୍ୱାଧୀନତା ଲାଭ କରିବାକୁ ହେଲେ ତୀବ୍ର ସଂଗ୍ରାମ ଆବଶ୍ୟକ । ଲବଣ ସତ୍ୟାଗ୍ରହ, ଖଜଣା ବନ୍ଦ ଆଦି ଆକାରରେ ଏ ଯୁଦ୍ଧ ଆରମ୍ଭ ହେଲା । ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କ ସହିତ ୬୦ ହଜାର କଂଗ୍ରେସ ସେବକ ବନ୍ଦୀ ହେଲେ । ପୂର୍ଣ୍ଣ ବେଗରେ ୮ ମାସ କାଳ ଏ ଅହିଂସ ସଂଗ୍ରାମ ଚାଲିଲା । ସେ ସମୟରେ ଲଣ୍ଡନଠାରେ ଗୋଲଟେବୁଲ ବୈଠକ ଚାଲିଥିଲା । ସେ ସମୟର ବ୍ରିଟିଶ ପ୍ରଧାନ ମନ୍ତ୍ରୀ ରାମସେ ମ୍ୟାକଡୋନାଲଡ୍ ସେଥିରେ କୌଣସି ଫଳ ଲାଭ ହେବାର ଆଶା ନ ଦେଖି କଂଗ୍ରେସ ସହିତ ମିଳାମିଶା କରିବା ଦିଗରେ ଉଦ୍ୟମ ଆରମ୍ଭ କଲେ । ୧୯୩୧ ଜାନୁଆରୀ ମାସ ୨୬ ତାରିଖ ଦିନ ଗାନ୍ଧୀଜୀ ଓ ଅନ୍ୟ ୨୫ ଜଣ ମୁଖ୍ୟ ନେତାଙ୍କୁ ବନ୍ଦୀଶାଳାରୁ ମୁକ୍ତି ଦିଆଗଲା । ବଡ଼ଲାଟ ଲର୍ଡ଼ ଇରଉଇନ ସେମାନଙ୍କ ସହିତ ଆଲୋଚନା ଚଳାଇଲେ । ଏହା ଫଳରେ "ଗାନ୍ଧୀ-ଇରଉଇନ ଚୁକ୍ତି' ସ୍ଥାପିତ ହେଲା । ୧୯୩୧ ମାର୍ଚ୍ଚ ମାସ ୫ ତାରିଖ ଦିନ ଏ ଚୁକ୍ତି ସ୍ୱାକ୍ଷରିତ ହୋଇଥିଲା । ଏ ଚୁକ୍ତିକୁ ମୁକ୍ତି ସଂଗ୍ରାମର ପ୍ରଥମ ବିଜୟ ବୋଲି କୁହାଯାଏ । ସେ ବର୍ଷ ଡିସେମ୍ବର ମାସରେ ଗାନ୍ଧୀଜୀ ଗୋଲଟେବୁଲ ବୈଠକରେ ଯୋଗଦାନ କରିଥିଲେ ।

## ବ୍ରିଟିଶ ପେଞ୍ଚ

ଗୋଲଟେବୁଲ ଭିତରେ ଓ ବାହାରେ ବ୍ରିଟିଶ ସରକାର ଗୋଟାଏ ନୂଆ ଖେଳ ଆରମ୍ଭ କଲେ । ଗାନ୍ଧୀଜୀ ଲଣ୍ଡନରେ ଥିବା ସମୟରେ ଯୁକ୍ତପ୍ରଦେଶରେ (ଆଜିକାଲି ଉତ୍ତର ପ୍ରଦେଶ) ପଣ୍ଡିତ ଜବାହରଲାଲ ନେହେରୁ ଓ ଉତ୍ତର ପଶ୍ଚିମ ସୀମାନ୍ତ ପ୍ରଦେଶରେ 'ସୀମାନ୍ତ ଗାନ୍ଧୀ' ଖାଁ ଅବଦୁଲ ଗଫୁର ଖାଁଙ୍କୁ ଗିରଫ କରାଗଲା । ଗୋଲଟେବୁଲ ବୈଠକରେ ମଧ୍ୟ ଆଗାଖାଁ ଓ ଜିନ୍ନା ପ୍ରମୁଖ ମୁସଲମାନ ପ୍ରତିନିଧିଦଳ ସାମ୍ପ୍ରଦାୟିକ ମନୋଭାବ ଧରି ଭାରତରେ ସ୍ୱାଧୀନତା ପ୍ରାପ୍ତିରେ ବାଧା ଦେବାରେ ଲାଗିଲେ ; ମାନ୍ଦାଦଳର ଲୋକେ ମଧ୍ୟ ଅଗ୍ରଗମନରେ ପ୍ରତିବନ୍ଧକ ହେଲେ ; ବ୍ରିଟିଶ ସରକାର ମଧ୍ୟ ହିନ୍ଦୁଙ୍କଠାରୁ ହରିଜନଙ୍କୁ ଅଲଗା କରି ଦେବାର ଚେଷ୍ଟା ଚଳାଇଲେ । ଗାନ୍ଧୀଜୀ ଖାଲି ହାତରେ ଭାରତକୁ ଫେରି ଆସିଲେ । ଭାରତରେ ପହଞ୍ଚି ସେ ନବାଗତ ବଡ଼ଲାଟ ଲର୍ଡ଼ ଉଇଲିଂଡନଙ୍କ ସହିତ ସାକ୍ଷାତ କରିବାକୁ ଇଚ୍ଛା କଲେ; କିନ୍ତୁ ବଡ଼ଲାଟ ନାସ୍ତି କରି ଦେଲେ । ପୁଣି ବ୍ରିଟିଶ ସରକାରଙ୍କ ସହିତ ସଂଘର୍ଷ ଲାଗିଗଲା । ଆଇନ ଅମାନ୍ୟ ଆନ୍ଦୋଳନ ସମ୍ପର୍କରେ ୧୯୩୨-୩୩ରେ ୧ ଲକ୍ଷ ୨୦ ହଜାର ଭାରତବାସୀ ବନ୍ଦୀ ହେଲେ ।

## ପୁନା-ଚୁକ୍ତି

ଗୋଲଟେବୁଲ ବୈଠକ ସମ୍ପର୍କରେ ବ୍ରିଟିଶ ପ୍ରଧାନ ମନ୍ତ୍ରୀ ୧୯୩୨ ମାର୍ଚ୍ଚ ମାସରେ ଯେଉଁ ସାମ୍ପ୍ରଦାୟିକ ମୀମାଂସା ଦେଇଥିଲେ, ତାହା ଫଳରେ ହରିଜନମାନଙ୍କୁ ହିନ୍ଦୁ ସମ୍ପ୍ରଦାୟରୁ ଅଲଗା କରି ଦିଆଯାଇଥିଲା । ଗାନ୍ଧୀଜୀ ସେତେବେଳେ ବନ୍ଦୀ । ୟେରବାଡ଼ା ଜେଲରେ ତାଙ୍କୁ ବନ୍ଦୀ କରି ରଖାଯାଇଥିଲା । ସାମ୍ପ୍ରଦାୟିକ ବଣ୍ଟାଆରା ବିରୁଦ୍ଧରେ ସେ ଆମରଣ ଅନଶନ ଆରମ୍ଭ କଲେ । ୬ ଦିନ ଅନଶନ ଫଳରେ ବଣ୍ଟାଆରା ବଦଳିଗଲା ଓ ହରିଜନମାନେ ବ୍ୟବସ୍ଥା ସଭାରେ ଅଧିକ ଆସନ ପାଇଲେ । ୧୯୩୨-୩୩ ରେ ଅଣ ଶୋଷଣ ଦମନଲୀଳା ଚାଲିଥିଲା । ଜେଲ ଭିତରେ ଥାଇ ହରିଜନ ଆନ୍ଦୋଳନ ଚଳାଇବେ ବୋଲି ଗାନ୍ଧୀଜୀ ଦାବି କଲେ । ବ୍ରିଟିଶ ସରକାର ଏଥିରେ ସ୍ୱୀକୃତ ନ ହେବାରୁ ୧୯୩୩ ରେ ପୁଣି ସେ ଅନଶନ ଆରମ୍ଭ କରିଥିଲେ । ଅନଶନ ସମୟରେ ତାଙ୍କୁ କାରାଗାରରୁ ମୁକ୍ତି ଦିଆଗଲା । ବର୍ଷେ କାଳ ରାଜନୈତିକ କାର୍ଯ୍ୟକଳାପରେ ଯୋଗ ଦେବେ ନାହିଁ ବୋଲି ସେ ଘୋଷଣା କଲେ । ଏ ବର୍ଷକ ସେ ହରିଜନ

ନାମରେ ଜଣାଇଥିଲେ । ଏହି ସମୟରେ ସେ ପୁରୀଠାରୁ ଭଦ୍ରକ ପର୍ଯ୍ୟନ୍ତ ପାଦଯାତ୍ରା କରିଥିଲେ । ୧୯୩୪ ଅପ୍ରେଲ ମାସରେ ଆଇନ ଅମାନ୍ୟ ଆନ୍ଦୋଳନ ସ୍ଥଗିତ ରଖାଯିବ ବୋଲି ସେ ସ୍ଥିର କରିଥିଲେ । ସେ ବର୍ଷ ମଇ ମାସରେ ପାଟନାଠାରେ ନିଖିଳ ଭାରତ କଂଗ୍ରେସ କମିଟିର ଯେଉଁ ବୈଠକ ହୋଇଥିଲା, ସେଥିରେ ଗାନ୍ଧିଙ୍କର ଏ ନିଷ୍ପତ୍ତିକୁ ସ୍ୱୀକାର କରାଯାଇଥିଲା । ବଡଲାଟ ଲର୍ଡ଼ ଉଇଲିଂଡନ କହିଲେ ଯେ, କଂଗ୍ରେସକୁ ଚୂର୍ଣ୍ଣୀଭୂତ କରିବାରେ କୃତକାର୍ଯ୍ୟ ହୋଇଛନ୍ତି । ତେଣୁ ୧୯୩୪ ନଭେମ୍ବର ମାସରେ ସେ କେନ୍ଦ୍ର ବ୍ୟବସ୍ଥା ପରିଷଦର ନିର୍ବାଚନ କରାଇଲେ । ୧୯୩୪ ଅକ୍ଟୋବର ମାସରେ ବମ୍ବେଠାରେ ଯେଉଁ କଂଗ୍ରେସ ଅଧିବେଶନ ହୋଇଥିଲା, ସେଥିରେ ଏ ନିର୍ବାଚନରେ କଂଗ୍ରେସ ଲଢ଼ିବ ବୋଲି ସ୍ଥିର କରାଯାଇଥିଲା । ଏ ନିର୍ବାଚନରେ କଂଗ୍ରେସ ଜୟଯୁକ୍ତ ହେଲା । ୧୯୩୪ ରୁ ୧୯୪୫ ପର୍ଯ୍ୟନ୍ତ କେନ୍ଦ୍ର ବ୍ୟବସ୍ଥା ପରିଷଦରେ କଂଗ୍ରେସ ଦଳ ପ୍ରଶଂସନୀୟ କାର୍ଯ୍ୟ କରିଥିଲେ ।

## ସ୍ୱାୟତ୍ତର ସ୍ୱାଦ

୧୯୩୫ରେ ନୂଆ ଭାରତ ଶାସନ ଆଇନ ପ୍ରଚଳିତ ହେଲା । ଏଥିରେ ଦୁଇଟି ଭାଗ ଥିଲା—ଯୁକ୍ତରାଷ୍ଟ୍ର ବ୍ୟବସ୍ଥା ଓ ପ୍ରାଦେଶିକ ସ୍ୱତନ୍ତ୍ରତା । ଏଥିରୁ କେବଳ ପ୍ରାଦେଶିକ ସ୍ୱତନ୍ତ୍ରତା ଭାଗଟି ଚାଲୁ କରାଯାଇଥିଲା । ନୂଆ ଆଇନ ଅନୁସାରେ ୧୯୩୭ ଫେବ୍ରୁଆରୀ ମାସରେ ଯେଉଁ ନିର୍ବାଚନ ହେଲା, ସେଥିରେ ୧୧ଟି ପ୍ରଦେଶ ମଧ୍ୟରୁ ୭ଟିରେ କଂଗ୍ରେସ ଜୟଯୁକ୍ତ ହେଲେ । ଲାଟମାନେ ଦୈନନ୍ଦିନ ଶାସନ ବ୍ୟବସ୍ଥାରେ ହସ୍ତକ୍ଷେପ କରିବେ ନାହିଁ ବୋଲି ପ୍ରତିଶ୍ରୁତି ନ ଦେଲେ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠନ କରିବ ନାହିଁ, ଏହା କଂଗ୍ରେସ ପକ୍ଷରୁ ବ୍ରିଟିଶ ସରକାରଙ୍କୁ ଜଣାଇ ଦିଆଯାଇଥିଲା । ୪ ମାସ ପରେ ୧୯୩୭ ଜୁନ ମାସରେ ଏ ପ୍ରତିଶ୍ରୁତି ମିଳିଲା । ତାହାଫଳରେ ୭ଟି ପ୍ରଦେଶରେ କଂଗ୍ରେସ ମନ୍ତ୍ରିମଣ୍ଡଳ ସ୍ଥାପିତ ହେଲା । ଏହାର ଅବ୍ୟବହିତ ପରେ ଆସାମ ଓ ଉତ୍ତର ପଶ୍ଚିମ ସୀମାନ୍ତ ପ୍ରଦେଶରେ ମଧ୍ୟ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠିତ ହେଲା । ଏଠାରୁ ଏକ ନୂଆ ଅଧ୍ୟାୟ ଆରମ୍ଭ ହେଲା । ଆନ୍ଦୋଳନ ଚଳା ଛଡ଼ା କଂଗ୍ରେସ ଦେଶ ଶାସନର ଦାୟିତ୍ୱ ମଧ୍ୟ ଗ୍ରହଣ କଲା । କଂଗ୍ରେସ ଶାସିତ ପ୍ରଦେଶମାନଙ୍କରେ ନାନା ଲୋକହିତକର କାର୍ଯ୍ୟ ଚାଲିଲା ।

## ଦ୍ୱିତୀୟ ମହାଯୁଦ୍ଧ

ସେପ୍ଟେମ୍ବର ମାସ ୩ ତାରିଖ ୧୯୩୯ରେ ଦ୍ୱିତୀୟ ମହାଯୁଦ୍ଧ ଲାଗିଗଲା । କଂଗ୍ରେସ ଯୁଦ୍ଧ ଉଦ୍ୟମରେ ଯୋଗ ଦେବ କି ନାହିଁ, ଏ ପ୍ରଶ୍ନ ଗୁରୁତର ଆକାର ଧାରଣ କଲା । ବ୍ରିଟିଶ ସରକାର ଯେଉଁ ଯୁଦ୍ଧ କରୁଛନ୍ତି, ତାହାର ଲକ୍ଷ୍ୟ କଅଣ ଏ କଥା ଘୋଷଣା କରାଯାଉ ବୋଲି କଂଗ୍ରେସ କାର୍ଯ୍ୟକରୀ ସମିତି ଦାବି କଲେ । ବ୍ରିଟିଶ ସରକାରଙ୍କ ପକ୍ଷରୁ ଉତ୍ତର ମିଳିଲା ଯେ, ସେମାନେ ଏ ବିଷୟରେ ଏ ପର୍ଯ୍ୟନ୍ତ କୌଣସି ନିଷ୍ପତ୍ତି କରି ନାହାନ୍ତି । ଏହା ଫଳରେ ୧୯୩୯ ଖ୍ରୀଷ୍ଟାବ୍ଦ ଅକ୍ଟୋବର ଓ ନଭେମ୍ବର ମାସରେ ଆଠଟି ପ୍ରଦେଶର କଂଗ୍ରେସ ମନ୍ତ୍ରିମଣ୍ଡଳ ଇସ୍ତଫା ଦେଲେ ଓ ଏଗୁଡ଼ିକରେ ଲାଟ ଶାସନ ପ୍ରବର୍ତ୍ତିତ ହେଲା । ୧୯୪୦ ଅଗଷ୍ଟ ମାସରେ ଭାରତର ତଦାନୀନ୍ତନ ବଡଲାଟ ଲର୍ଡ଼ ଲିନଲିଥ୍‌ଗୋ ଓ ଭାରତ ସଚିବ ଆମେରି ଘୋଷଣା କଲେ ଯେ, ବଡ଼ଲାଟଙ୍କ ଏକ୍‌ଜିକ୍ୟୁଟିଭ କାଉନ୍‌ସିଲରେ ଅଧିକ କେତେ ଜଣ ଭାରତୀୟଙ୍କୁ ସ୍ଥାନ ଦିଆଯିବ । ଭାରତ ଶାସନ ଆଇନରେ ଯୁକ୍ତରାଷ୍ଟ୍ର ସ୍ଥାପନର ଯେଉଁ ବ୍ୟବସ୍ଥା ଥିଲା, ୯ କୋଟି ମୁସଲମାନ ସେଥିରେ ଆପତ୍ତି ଉଠାଇବାରୁ ତାହା ଚାଲୁ କରାଯିବ ନାହିଁ ବୋଲି ମଧ୍ୟ ସେମାନେ ଘୋଷଣା କଲେ । ଇଚ୍ଛାବିରୁଦ୍ଧରେ ଭାରତକୁ ଯୁଦ୍ଧ ଭିତରକୁ ଟାଣି ନେଇଥିବାରୁ ତାହା ବିରୁଦ୍ଧରେ ପ୍ରତିବାଦ କରିବା ଉଦ୍ଦେଶ୍ୟରେ

ବ୍ୟକ୍ତିଗତ ଆଇନ ଅମାନ୍ୟ ଆନ୍ଦୋଳନ ଆରମ୍ଭ ହେଲା । ଗାନ୍ଧୀଜୀ ତାହାରେ ଆଉ ଏ ଆନ୍ଦୋଳନ ଚଳାଇଲେ । ଏ ଆନ୍ଦୋଳନମାନଙ୍କରେ ଆଚାର୍ଯ୍ୟ ବିନୋବା ଭାବେ ପ୍ରଥମ ସତ୍ୟାଗ୍ରହୀ ଥିଲେ । ବର୍ଷେ କାଳ ଏ ଆନ୍ଦୋଳନ ଚାଲିଲା । ତାହା ପରେ ବ୍ରିଟିଶ ସରକାର ସତ୍ୟାଗ୍ରହୀ ବନ୍ଦୀମାନଙ୍କୁ ମୁକ୍ତ ଦେଇଥିଲେ ।

## ଶେଷ ସଂଗ୍ରାମ—୧୯୪୨

୧୯୪୨ ମାର୍ଚ୍ଚ ମାସରେ ବ୍ରିଟିଶ ପାର୍ଲାମେଣ୍ଟରେ ଘୋଷିତ ଘୋଷଣା ପ୍ରକାଶ ପାଇବା ପରେ, କେତେଗୁଡ଼ିଏ ନୂଆ ପ୍ରସ୍ତାବ ନେଇ ସାର୍ ଷ୍ଟାଫୋର୍ଡ଼ କ୍ରିପସ ଭାରତକୁ ଆସିଲେ । ସେ ଆସିଲେ; ଗାନ୍ଧୀଜୀଙ୍କ ସହିତ ଦେଖା ହେଲା । କଂଗ୍ରେସ ସଭାପତି, ମୁସଲିମ୍ ଲିଗ୍ ସଭାପତି, ରାଜା-ମହାରାଜା, ଅନୁନ୍ନତ ସମ୍ପ୍ରଦାୟ ସଂଘ, ହିନ୍ଦୁ ମହାସଭା ଆଦି ସମସ୍ତ ଦଳ ଓ ମତ ସହିତ ଆଲୋଚନା ଚାଲିଲା । ପ୍ରସ୍ତାବ ସମ୍ପର୍କରେ ବଡ଼ଲାଟଙ୍କ ଏକ୍ଜିକ୍ୟୁଟିଭ କାଉନ୍ସିଲରେ ଯେଉଁ ସଭ୍ୟ ନିଯୁକ୍ତ ହେବେ; ତାଙ୍କୁ ଅଧିକ କ୍ଷମତା ଦିଆଯାଉ ବୋଲି କଂଗ୍ରେସ ପକ୍ଷରୁ ଦାବୀ ଉଠିଲା । କ୍ରିପସ ଏଥିରେ ରାଜି ହୋଇପାରିଲେ ନାହିଁ । ଏଣୁ ଭାରତରେ ତାଙ୍କ ଚେଷ୍ଟା ବ୍ୟର୍ଥ ହୋଇଗଲା ।

## 'ଭାରତ ଛାଡ଼'

ଗାନ୍ଧୀଜୀ ଦେଖିଲେ ଯେ, ବ୍ରିଟିଶ ସରକାର ଭାରତ ନ ଛାଡ଼ିଲେ ଏ ଦେଶର ନିସ୍ତାର ନାହିଁ । ସେ 'ଭାରତ ଛାଡ଼' ପ୍ରସ୍ତାବ ଆରମ୍ଭ କଲେ । ଏହାକୁ କାର୍ଯ୍ୟରେ ପରିଣତ କରିବାପାଇଁ ବ୍ୟାପକ ସତ୍ୟାଗ୍ରହ କରିବେ ବୋଲି ଘୋଷଣା କଲେ । ୧୯୪୨ ଅଗଷ୍ଟ ମାସ ୮ ତାରିଖ ଦିନ ବୋମ୍ବେଠାରେ ବସିଥିବା ନିଖିଳ ଭାରତ କଂଗ୍ରେସ କମିଟିରେ ଜାତିର ଏ ଦାବୀ ପ୍ରସ୍ତାବ ଗୃହୀତ ହେଲା । ଅଗଷ୍ଟ ୯ ତାରିଖ ଭୋର ବେଳେ ମହାତ୍ମା ଗାନ୍ଧୀ, କଂଗ୍ରେସ କାର୍ଯ୍ୟକାରୀ କମିଟିର ସଭ୍ୟ ଓ ଅନ୍ୟାନ୍ୟ ନେତାମାନଙ୍କୁ ଗିରଫ କରାଗଲେ । ଏ ଖବର ଚାରିଆଡ଼େ ଖେଳିଗଲା; ଲୋକେ କ୍ଷିପ୍ତ ହୋଇ ଉଠିଲେ । ବୋମ୍ବେ ଆଉ ବହୁ ବଡ଼ ସହରରେ ସମବେତ ଜନତା ଉପରେ ଗୁଳି ଚାଲିଲା । ଏହି ବିରାଟ ବିପ୍ଳବ ଦେଶର ଏକ ସୀମାରୁ ଅପର ସୀମା ପର୍ଯ୍ୟନ୍ତ ବ୍ୟାପ୍ତ ହୋଇଗଲା ।

## "ଆଜାଦ୍ ହିନ୍ଦ୍ ସରକାର"

ଏହି ସମୟରେ ଭାରତ ବାହାରେ ସୁଭାଷଚନ୍ଦ୍ର ବୋଷଙ୍କ ନେତୃତ୍ୱରେ ଆଜାଦ ହିନ୍ଦ୍ ବାହିନୀ ଯୁଦ୍ଧ ପରେ ଯୁଦ୍ଧରେ କୃତକାର୍ଯ୍ୟ ହୋଇ ଇମ୍ଫାଲ ରଣକ୍ଷେତ୍ରରେ ଜାତୀୟ ପତାକା ଉଡ଼ାଇଥିଲେ । ଭାରତ ବାହାରେ ମଧ୍ୟ ସ୍ୱାଧୀନ ଭାରତ ସରକାର ସ୍ଥାପିତ ହୋଇ ରାଜ୍ୟ ପରିଚାଳନା କରୁଥିଲା ।

ଗାନ୍ଧୀଜୀଙ୍କୁ ଆଗା ଖାଁ ପ୍ରାସାଦରେ ବନ୍ଦୀ କରି ରଖାଯାଇଥିଲା । ଅଗଷ୍ଟ ଆନ୍ଦୋଳନ ବିଷୟରେ ବ୍ରିଟିଶ ସରକାର କଂଗ୍ରେସ ବିରୁଦ୍ଧରେ ଯେଉଁ ଦୋଷାରୋପ କରିଥିଲେ, ତାହାର ପ୍ରତିବାଦ କରି ସେ ୨୧ ଦିନ ଅନଶନ କରିଥିଲେ । ସେତେବେଳେ ତାଙ୍କର ବୟସ ୭୩ ବର୍ଷ । ୧୯୪୩ ମାର୍ଚ୍ଚ ମାସ ୩ ତାରିଖ ଦିନ ଏ ଅନଶନ ସମାପ୍ତ ହୋଇଥିଲା । ଆଗା ଖାଁ ପ୍ରାସାଦରେ ବନ୍ଦୀ ଥିଲାବେଳେ ଗାନ୍ଧୀଜୀ ସାଂଘାତିକ ଭାବରେ ପୀଡ଼ିତ ହୋଇ ପଡ଼ିବାରୁ ୧୯୪୪ ମଇ ମାସ ୬ ତାରିଖ ଦିନ ତାଙ୍କୁ ମୁକ୍ତ କରାଯାଇଥିଲା ।

## ଶେଷ ଅଧ୍ୟାୟ

୧୯୪୬ ମାର୍ଚ୍ଚ ମାସରେ ମୁକ୍ତି ସଂଗ୍ରାମର ଶେଷ ଅଧ୍ୟାୟ ଆରମ୍ଭ ହେଲା । ବ୍ରିଟିଶ ପ୍ରତିନିଧି ଦଳ ( କ୍ୟାବିନେଟ୍ ମିଶନ୍ ) ଭାରତକୁ ଆସି କଂଗ୍ରେସ, ମୁସଲିମ୍ ଲିଗ ଓ ଅନ୍ୟାନ୍ୟ ରାଜନୈତିକ ଦଳ ସହିତ ଆଲୋଚନା ଆରମ୍ଭ କଲେ । କେନ୍ଦ୍ରରେ ଅସ୍ଥାୟୀ ସରକାର ସ୍ଥାପନ ଓ ବିଧାନ ସଭା ଗଠନ କରାଯିବ ବୋଲି ସ୍ଥିର ହେଲା । ପ୍ରଥମେ ମୁସଲିମ୍ ଲିଗ

ଅସ୍ଥାୟୀ ସରକାରରେ ଯୋଗଦେଲେ ନାହିଁ । ଲର୍ଡ଼ ୱାଭେଲ ସେତେବେଳେ ଭାରତର ବଡ଼ଲାଟ ଥାଆନ୍ତି । ସେ ଏକ ପେଞ୍ଚ ଖେଳ ବାହ୍ୟଦ୍ୱାରବାଟେ ଲିଆକତ ଅଲି ଖାଁ ଓ ଅବଦୁର୍ ରବ୍ ନଷ୍ଟାରଙ୍କୁ ଆଣି ଅସ୍ଥାୟୀ ସରକାରରେ ପୂରାଇ ଦେଲେ । ପ୍ରଧାନ ସ୍ଥଳରେ ଲିଗ ସଦସ୍ୟମାନେ ଯୋଗଦେଲେ ନାହିଁ । ଏହା ଫଳ ର ସେମାନେ ଗୋଟିଏ ଅଚଳ ପରିସ୍ଥିତି ସୃଷ୍ଟି କଲେ ।

## ସାମ୍ପ୍ରଦାୟିକ ଗଣ୍ଡଗୋଳ

୧୯୪୬ ଅଗଷ୍ଟ ମାସରେ ଭାରତର ବୃହଦଂଶରେ ବ୍ୟାପକରୂପେ ସାମ୍ପ୍ରଦାୟିକ ଗଣ୍ଡଗୋଳ ଲାଗିଗଲା । ଯେଉଁ ପ୍ରଦେଶମାନଙ୍କରେ ଲିଗ୍ ମନ୍ତ୍ରିମଣ୍ଡଳ ଥିଲେ, ସେଠାରେ ଏହା ଭୀଷଣ ଆକାର ଧାରଣ କଲା । କେନ୍ଦ୍ର ସରକାରରେ ଲିଗ୍‌ପକ୍ଷରୁ ଲୋକ କୌଣସି ନିର୍ଦ୍ଦିଷ୍ଟ ବ୍ୟବସ୍ଥା ଅବଲମ୍ବନ କରିବାରେ ବାଧା ଦେଲେ । ଫଳରେ ଦେଶକୁ ଦୁଇଖଣ୍ଡ କରି ଭାରତ ଓ ପାକିସ୍ଥାନ ସୃଷ୍ଟି କରିବା ଛଡ଼ା ଅନ୍ୟ ଉପାୟ ରହିଲା ନାହିଁ । ଲର୍ଡ଼ ମାଉଣ୍ଟବେଟନ ସେତେବେଳେ ବଡ଼ଲାଟ ଥିଲେ ।

## ବ୍ରିଟିଶ ସରକାରଙ୍କ "ଭାରତ ଛାଡ଼"

୧୯୪୭ ଅଗଷ୍ଟ ମାସ ୧୫ ତାରିଖ ଦିନ ବ୍ରିଟିଶ ସରକାର ଭାରତ ଛାଡ଼ି ଚାଲିଯିବେ ବୋଲି ସେ ଘୋଷଣା କଲେ । ୧୯୪୭ ଅଗଷ୍ଟ ମାସ ୧୪ ତାରିଖ ରାତି ୧୨ଟାରେ ବ୍ରିଟିଶ ସରକାର କ୍ଷମତା ହସ୍ତାନ୍ତର କଲେ । ସେହିଦିନଠାରୁ ଭାରତ ସ୍ୱାଧୀନ ହେଲା ।



# ପଞ୍ଚବାର୍ଷିକୀ ଯୋଜନା

[ ପୂର୍ବ ପ୍ରକାଶିତ ଉତ୍ତାରୁ ]

## ଏକବିଂଶ ପରିଚ୍ଛେଦ

### ଜଙ୍ଗଲ

ଭାରତର ଅର୍ଥନୀତିରେ ଜଙ୍ଗଲଗୁଡ଼ିକର ବିଶେଷ ସ୍ଥାନ ଅଛି । ଜଙ୍ଗଲରୁ ବହୁତ ଜାଳେଣି କାଠ ମିଳେ । ଗୋରୁଙ୍କ ପାଇଁ ଜଙ୍ଗଲରେ ଗୋଚର ରହିଛି । ଆହୁରି ମଧ୍ୟ ଘରେ, ଶିଳ୍ପ କାରଖାନାରେ ଓ ଯୁଦ୍ଧକାମରେ ଲାଗିବା ପାଇଁ ଜଙ୍ଗଲରୁ କଞ୍ଚାକାଠ, ବାଉଁଶ, ଲାଖ, ଗୋନ୍ଦ ଅଠା ଓ ଖଇର ମିଳେ । ଜଙ୍ଗଲ ଦ୍ୱାରା ମାଟିର ଉର୍ବରତା ରକ୍ଷା ହୁଏ । ସ୍ଥଳଭାଗରେ ଜଳ ରହିବାରେ ମଧ୍ୟ ଜଙ୍ଗଲ ସାହାଯ୍ୟ କରେ । ଜଙ୍ଗଲ ଯୋଗୁଁ ପାହାଡ଼ିଆ ଅଞ୍ଚଳରେ ଅଧିକ ମୃତ୍ତିକାକ୍ଷୟ ହୋଇପାରେ ନାହିଁ । ଆହୁରି ମଧ୍ୟ ଜଙ୍ଗଲ ଥିଲେ ସମତଳ ଭୂମି ପବନ ଦ୍ୱାରା ଶୁଖି ଯାଆନ୍ତା; ମାଟି ଉଡ଼ି ମୃତ୍ତିକା କ୍ଷୟ ମଧ୍ୟ ଘଟନ୍ତା ।

### ଜଙ୍ଗଲ ଅଞ୍ଚଳ

୨ । ୧୯୪୯-୫୦ ରେ ଭାରତରେ ୧୭୬.୭ ନିୟୁତ ଏକର ଜଙ୍ଗଲ ଥିଲା । ଏ ଦେଶର ସମୁଦାୟ ସ୍ଥଳଭାଗର ଏହା ଶତକଡ଼ା ୧୮ ଅଂଶ । ୧୯୫୨ ମଇ ମାସ ତା ୧୨ ରେ ଜଙ୍ଗଲ-ନୀତି ବିଷୟରେ ଯେଉଁ ପ୍ରସ୍ତାବ ଗୃହୀତ ହୋଇଥିଲା, ସେଥିରେ ସୂଚନା

ଜଣାଯାଇଥିବ ଯେ ସମଗ୍ର ଭାରତରେ ଯେତେ ସ୍ଥଳଭାଗ ଅଛି, ତାହାର ଏକତୃତୀୟାଂଶ ଜଙ୍ଗଲରେ ଆବୃତ ହେବା ଉଚିତ । ଯେତେ ପରିମାଣ ସ୍ଥଳଭାଗରେ ଜଙ୍ଗଲ ରହିବ ବୋଲି ଲକ୍ଷ୍ୟ ସ୍ଥିର କରାଯାଇଛି ଓ ବର୍ତ୍ତମାନ ଯେତେ ଜମିରେ ଜଙ୍ଗଲ ରହିଛି, ଏ ଦୁଇଟି ଭିତରେ ଅଧିକ ପାର୍ଥକ୍ୟ ରହିଛି । ପୁଣି ଜଙ୍ଗଲଗୁଡ଼ିକ ପ୍ରଧାନତଃ ହିମାଳୟ, ବିନ୍ଧ୍ୟ ଓ ଦକ୍ଷିଣାତ୍ୟରେ ସୀମାବଦ୍ଧ ହୋଇ ରହିଛି । ସେହିପରି ଓ ଗାଙ୍ଗେୟ ଉପତ୍ୟକାରେ ଆଦୌ ଜଙ୍ଗଲ ନାହିଁ କହିଲେ ଚଳେ । ଯେତେ ପଡ଼ିଆ ଜମି ରହିଛି । କୃଷିର ପ୍ରସାର ପାଇଁ ସେ ଜମି ଦରକାର ହେବ କି ନାହିଁ, ଏହା ସ୍ଥିର କରି ସେହିମତେ ଯୋଜନାନୁସାରେ ଜଙ୍ଗଲ ବଢ଼ାଇବା ବିଷୟ ଠିକ୍ କରିବାକୁ ହେବ । ଜମି କିପରି ଠିକ୍ ଭାବରେ ବ୍ୟବହାର କରାଯିବ, କୃଷି ପାଇଁ କେତେ ଓ ଜଙ୍ଗଲ ପାଇଁ କେତେ ଜମି ରହିଲେ କୃଷି ଫଳରେ ଜଙ୍ଗଲ ଓ ଜଙ୍ଗଲ ଫଳରେ କୃଷିର ଉନ୍ନତି ହେବ, ତାହାର ଏକ ଉପାୟ ସ୍ଥିର କରିବା ପାଇଁ ପଡ଼ିଆ ଜମି କେତେ ଅଛି, ସେ ବିଷୟରେ ଶୀଘ୍ର ମାପଚୂପ କରିବାକୁ ହେବ ।

୩ । ଜମିର ସଦ୍‌ବ୍ୟବହାର ପାଇଁ ଯେଉଁ ନୀତି ସ୍ଥିର ହୋଇଛି ତଦନୁସାରେ ପ୍ରତି ରାଜ୍ୟରେ କେତେ ଜମିରେ ଜଙ୍ଗଲ ରହିବ ଓ କେତେ ଜମିରେ କୃଷି ହେବ, ଇତିମଧ୍ୟରେ ସେଣ୍ଟ୍ରାଲ ବୋର୍ଡ଼ ଅଫ୍ ଫରେଷ୍ଟ୍ରୀ ତାହାର ଅନୁପାତର ସୂଚନା ଦେବା ଦରକାର । ଯେଉଁଠି ଏହି ଅନୁପାତଠାରୁ ଅଧିକ ଜମିରେ ଜଙ୍ଗଲ ଥିବ କେବଳ ସେଠାରେ ସ୍ଥାୟୀ କୃଷିର ପ୍ରସାର ନିମନ୍ତେ ଜଙ୍ଗଲ ନଷ୍ଟ କରିବା ପାଇଁ ଅନୁମତି ଦିଆଯାଇ ପାରିବ । ସ୍ଥାୟୀ କୃଷି ପାଇଁ ଯେତିକି ଜଙ୍ଗଲ ନଷ୍ଟ କରାଯାଇଥିବ ଅନ୍ୟଠାରେ ଯଦି ସେତିକି ଜମିରେ ଜଙ୍ଗଲ କରିବାର ସୁବିଧା ଥାଏ ତେବେ ସେ ସ୍ଥଳରେ କରାଯାଇଥିବା ଜଙ୍ଗଲ ନଷ୍ଟ କରିବାପାଇଁ ଅନୁମତି ଦିଆଯିବ । ଅଧିକନ୍ତୁ ମଧ୍ୟ ଯେଉଁଠାରେ ପଡ଼ିଆ ଜମି ଜଙ୍ଗଲରେ ପରିଣତ ହେବାପାଇଁ ଉପଯୁକ୍ତ ହୋଇଥିବ, ଜଙ୍ଗଲ ଅଞ୍ଚଳକୁ ସେହି ଜମିଗୁଡ଼ିକୁ ଧୀରେ ଧୀରେ ବଢ଼ାଇବା ଆବଶ୍ୟକ ।

୪ । ଯେଉଁ ଅଞ୍ଚଳରେ ସ୍ୱଭାବତ ଜଙ୍ଗଲ ରହିଥିବ ତାହାର ପ୍ରସାର ପାଇଁ ଗୋଟିଏ ଦୀର୍ଘକାଳସ୍ଥାୟୀ ଯୋଜନା ହେବା ଦରକାର । ଯେଉଁସବୁ ଜଙ୍ଗଲରୁ ଗଛ କାଟି ସଫା କରି ଦିଆଯାଇଛି ବା ଯେଉଁ ଜଙ୍ଗଲ ଠିକ୍‌ରୂପେ ପରିଚାଳିତ ହେଉନାହିଁ, ସେ ସବୁଠାରେ ପୁଣି ଜଙ୍ଗଲ ତିଆରି କରି ଯଥେଷ୍ଟ ଉନ୍ନତି କରାଯାଇ ପାରିବ । ଉଦାହରଣ ସ୍ୱରୂପ ଉଲ୍ଲେଖ କଲେ ପ୍ରାୟ ୪ କୋଟି ଏକର ଜମିଦାରୀ ଜଙ୍ଗଲ ରାଜ୍ୟସରକାରମାନଙ୍କଠାରେ ନ୍ୟସ୍ତ ହୋଇଛି । ଗତ କେତେବର୍ଷ ହେଲା ଏହି ସବୁଥିରୁ ଅଧିକ ଗଛ କାଟି ନିଆଯାଇଥିବା ଯୋଗୁଁ ସେସବୁରେ ପୁଣି ଗଛ ଲଗାଯିବା ଦରକାର ପଡ଼ୁଛି । ପୂର୍ବତନ ଦେଶୀୟ ରାଜ୍ୟଗୁଡ଼ିକର ମିଶ୍ରଣ ଯୋଗୁଁ ଯେଉଁଠାରେ ଦେଶୀୟ ରାଜ୍ୟ-ପରିଚାଳିତ ଜଙ୍ଗଲ ଅଞ୍ଚଳର ପ୍ରସାର ଘଟିଛି, ସେଠାରେ ଗୋଟିଏ ଉପଯୁକ୍ତ ପରିଚାଳନା ଅନୁଷ୍ଠାନ ମଧ୍ୟ ସ୍ଥାପିତ ହେବା ଦରକାର । ଏଥିପାଇଁ ପଞ୍ଚବାର୍ଷିକ ଯୋଜନାରେ ବ୍ୟବସ୍ଥା ରଖାଯାଇଛି ।

୫ । କେତୋଟି ବିଷୟରେ ଶୀଘ୍ର ସମ୍ପ୍ରସାରଣ ପାଇଁ ମଧ୍ୟ ପରିସର ରହିଛି, ଯଥା—ମୃତ୍ତିକାକ୍ଷୟ ରୋଧ କରିବା ପାଇଁ ଜଙ୍ଗଲ ତିଆରି ଗଛ ଜମିର ସମ୍ପ୍ରସାରଣ ଓ ଗ୍ରାମ୍ୟ ବଗିଚା ସ୍ଥାପନ । ମୃତ୍ତିକାକ୍ଷୟ ରୋଧ କରିବା ପାଇଁ ଯେଉଁସବୁ ବ୍ୟବସ୍ଥା ହୋଇଛି, ସେ ସବୁ ଅନ୍ୟତ୍ର ମୋଟାମୋଟି ବୁଝାଇ ଦିଆଯାଇଛି । ସର୍ବସାଧାରଣ ଓ ସ୍ୱାୟତ୍ତଶାସନ ଅନୁଷ୍ଠାନମାନଙ୍କ ସହଯୋଗରେ ବହୁସଂଖ୍ୟାରେ ବୃକ୍ଷରୋପଣ କରାଯାଇ ପାରେ । ବନ-ମହୋତ୍ସବ କାର୍ଯ୍ୟକ୍ରମ ଅନୁସାରେ ଏ ବିଷୟରେ ପ୍ରୟୋଜନୀୟ କାର୍ଯ୍ୟ ଆରମ୍ଭ ହୋଇଛି । ଏ କାର୍ଯ୍ୟକୁ ଧାରାବାହିକରୂପେ ସଂଗଠିତ କରାଯିବା ଦରକାର ।

## ଗ୍ରାମ୍ୟ ବଗିଚା

୬। ଜାଳେଣି କାଠ ଓ ପଶୁଖାଦ୍ୟ ଅଧିକ ପରିମାଣରେ ଯୋଗାଇ ଦେବା ପାଇଁ ଗ୍ରାମମାନଙ୍କରେ ବୃକ୍ଷରୋପଣ କରିବାକୁ ହେବ। ବର୍ତ୍ତମାନ ୫୦ ଲକ୍ଷ ଟନ୍ ଜାଳେଣି କାଠ ଉତ୍ପାଦିତ ହେଉଛି ବୋଲି ହିସାବ କରାଯାଇଛି। ଏଥିରୁ ବୁଝିହେଉଛି ଯେ ଜଣପିଛା ବର୍ଷକୁ ଅର୍ଦ୍ଧମହଣରୁ କମ୍ (୦.୨ ଟନ୍) ଜାଳେଣି କାଠ ଖର୍ଚ୍ଚ ହେଉଛି। କିନ୍ତୁ ଯୁକ୍ତରାଷ୍ଟ୍ର ଆମେରିକାରେ ଜଣପିଛା ଏକ ଟନ୍ ବା ତତୋଧିକ ଅଧିକ କାଠ ଖର୍ଚ୍ଚ ହେଉଛି। ସମଗ୍ର ପୃଥିବୀରେ ୦.୩୪ ଟନ୍ ଜାଳେଣି କାଠ ଜଣପିଛା ଖର୍ଚ୍ଚ ହେଉଛି। ସୈନ୍ଧବ ଗାଙ୍ଗେୟ ଉପତ୍ୟକାର ପଲ୍ଲୀ ଅଞ୍ଚଳରେ ଜାଳେଣି କାଠ ଓ ଗୋଖାଦ୍ୟର ଘୋର ଅଭାବ ଘଟିଛି। ଏହା ଫଳରେ ଯେଉଁ ଗୋବର ସାଧାରଣତଃ ମୃତ୍ତିକାର ଉର୍ବରତା ବୃଦ୍ଧି କରିବାରେ ବ୍ୟବହୃତ ହୁଅନ୍ତା, ତାହା ଜାଳ ରୂପେ ବ୍ୟବହୃତ ହେଉଛି। ତେଣୁ ଜାଳେଣି କାଠ ଓ ଗୋଖାଦ୍ୟ ଯୋଗାଇବା ପାଇଁ କେତେକ ନିର୍ଦ୍ଦିଷ୍ଟ ଅଞ୍ଚଳର ଗ୍ରାମମାନଙ୍କରେ ବଗିଚାର ପରିମାଣ ବଢ଼ାଇବାକୁ ହେବ। ପଲ୍ଲୀ ସମାଜ ଯୋଜନା ପାଇଁ ବଛାଯାଇଥିବା ଅଞ୍ଚଳମାନଙ୍କରେ ଏ କାର୍ଯ୍ୟ ଆରମ୍ଭ ହେବା ଦରକାର।

## ଜାଳିବା କୋଇଲା

୭। ଅଧିକ ପରିମାଣରେ ଜାଳେଣି କାଠ ଯୋଗାଇବା ପାଇଁ ଓ ଗୋବରକୁ ସାର ହିସାବରେ ଖର୍ଚ୍ଚ କରିବା ପାଇଁ ଆଉ ଗୋଟିଏ ଉପାୟ ରହିଛି। ଏଥିପାଇଁ ଲୋକେ ଯେପରି ଗ୍ରାମ ଅଞ୍ଚଳମାନଙ୍କରେ ବିଶେଷତଃ ସୈନ୍ଧବ ଗାଙ୍ଗେୟ ସମତଳ ଭୂମିରେ ଜାଳେଣି କୋଇଲା ବ୍ୟବହାର କରିବେ, ତାର ବ୍ୟବସ୍ଥା କରିବାକୁ ହେବ। ଏ ଅଞ୍ଚଳ ଗୁଡ଼ିକରେ ଏହାର୍ ହେବା ନିତାନ୍ତ ଦରକାର। ଏ ଅଞ୍ଚଳଗୁଡ଼ିକ ନିକଟରେ କୋଇଲା ଖଣି ଥିବାରୁ ଲୋକମାନଙ୍କୁ ଅଳ୍ପ ସୁବିଧାରେ କୋଇଲା ଯୋଗାଇ ହେବ। ଭବିଷ୍ୟତରେ ବହୁତ ନ ହେଲେ ସ୍ୱୀକୃତ ଅନୁଷ୍ଠାନମାନଙ୍କ ଜରିଆରେ ଜାଳେଣି କୋଇଲା ବଣ୍ଟନ ପାଇଁ ବ୍ୟବସ୍ଥା କରିବାକୁ ହେବ। ୧୯୫୫-୫୬ ବେଳକୁ ଗ୍ରାମମାନଙ୍କରେ ଅଧିକା ୧୦ ଲକ୍ଷ ଟନ୍ ଜାଳେଣି କାଠ ବଣ୍ଟନ ଯେପରି ହୁଏ, ସେହି ପ୍ରତି ଲକ୍ଷ୍ୟ ରଖିବାକୁ ହେବ। ଜାଳେଣି କୋଇଲାର ବ୍ୟବହାରକୁ ଲୋକପ୍ରିୟ କରିବା ଉଦ୍ଦେଶ୍ୟରେ ସଫ୍ଟ କୋକ୍ ସେସ୍ କମିଟୀ ଗଢ଼ାଯାଇଥିଲା। ଯୁଦ୍ଧ ସମୟରେ ଏହାର କାମ ବନ୍ଦ ହୋଇଗଲା। ପୁଣି ଏହିପରି ଏକ କମିଟୀ ସ୍ଥାପନ କରିବା କଥା ବିଚାର କରାଯାଉଛି।

## କଢ଼ିକାଠ

୮। ଯୁଦ୍ଧ ସମୟରେ ବହୁସଂଖ୍ୟକ ଗଛ କଟା ଯାଇ କଢ଼ିକାଠର ଉତ୍ପାଦନ ବଢ଼ିଥିଲା; କିନ୍ତୁ ଏହା ପରେ ଏ ଉତ୍ପାଦନ କମିଯାଇଛି। ବର୍ତ୍ତମାନ ବର୍ଷକୁ ପ୍ରାୟ ୧.୮ ନିୟୁତ ଟନ୍ କଢ଼ିକାଠ ଉତ୍ପାଦିତ ହେଉଛି। ଆମଦାନି ହେଉଥିବା କାଠକୁ ମିଶାଇ ମୋଟରେ ପ୍ରାୟ ୨.୧ ନିୟୁତ ଟନ୍ କାଠ ମିଳୁଛି। ଦେଶବାସୀ ଲୋକେ ମୋଟ କାଠର ଶତକଡ଼ା ପ୍ରାୟ ୭୩ ଭାଗ ବ୍ୟବହାର କରୁଛନ୍ତି; ଅବଶିଷ୍ଟ ସରକାର ଖର୍ଚ୍ଚ କରୁଛନ୍ତି। ଯୁଦ୍ଧ ପରେ ସୈନ୍ୟବିଭାଗର ବେଶି କାଠ ଦରକାର ହେଉନାହିଁ। ତେଣୁ କାଠର ଚାହିଦା କମିଗଲା। କିନ୍ତୁ ବର୍ତ୍ତମାନ ବହୁସଂଖ୍ୟାରେ ନୂଆ ସହର ବସୁଛି ଓ ଆଶ୍ରୟପ୍ରାର୍ଥୀମାନଙ୍କୁ ଥଇଥାନ କରାଯାଉଛି। ତେଣୁ ଘରୋଇ କାମ ଓ ଘର ତିଆରି କାମ ପାଇଁ କାଠର ଚାହିଦା ଯଥେଷ୍ଟ ବଢ଼ିଯାଇଛି। ଅଧିକନ୍ତୁ, ପ୍ରୟୋଜନ ଅନୁଯାୟୀ ଇସ୍ପାତ ମିଳୁ ନ ଥିବାରୁ ଇସ୍ପାତ୍ ବଦଳରେ କାଠ ବ୍ୟବହାର କରିବା ଆବଶ୍ୟକ ହୋଇ ପଡ଼ୁଛି। ତେଣୁ ସଲଣ ହୋଇଥିବା କଢ଼ିକାଠ ଟେଲିଫୋନ୍, ଟେଲିଗ୍ରାଫ୍ ଓ ବିଦ୍ୟୁତ୍‌ଶକ୍ତି ଲାଇନ୍‌ରେ ବ୍ୟବହୃତ ହେବା ଉଚିତ। ଇଉରୋପର ଅଧିକାଂଶ ଦେଶରେ ଏହା ହେଉଛି। ଦକ୍ଷିଣ

ଆଣ୍ଡାମାନ ଦ୍ୱୀପପୁଞ୍ଜରୁ ୫୦,୦୦୦ ଟ୍ ଓ ସୁନ୍ଦରବନ ଓ ମହାନଦୀ ଅଞ୍ଚଳରୁ ୩୦,୦୦୦ ଟ୍ ଖୁଣ୍ଟ ସଂଗ୍ରହ କରିବା ସମ୍ଭବପର ହେବ । ଘର ନିର୍ମାଣ ଓ ଇଞ୍ଜିନିୟରିଙ୍ଗ୍ କାର୍ଯ୍ୟରେ ପାଲଟ ହେଉଥିବା କାଠ ବହୁ ପରିମାଣରେ ବ୍ୟବହାର କରିବାପାଇଁ କ ସମ୍ଭାବନା ଅଛି, ଯେ ବିଷୟ କେନ୍ଦ୍ର ଓ ରାଜ୍ୟ ପୂର୍ତ୍ତ ବିଭାଗମାନେ ଠିକ୍ କରିବା ଦରକାର ।

୯ । ଏ ସବୁ ବ୍ୟବସ୍ଥା କରାଗଲେ କାଠର ବୃଦ୍ଧିବା ବଢ଼ିଯିବ ଓ ପ୍ରତ୍ୟେକ ଏକର ପିଛା ଅଧିକ ଉତ୍ପାଦନ କରାଯାଇ କିମ୍ବା ଅଣ ଜଳଭ ଧରଣର ଜଙ୍ଗଲ ଉନ୍ନତ କରାଯାଇ ଅଧିକ କାଠ ସଂଗ୍ରହ କରିବାକୁ ହେବ । ଯାତାୟାତ ବ୍ୟବସ୍ଥାର ଅଭାବ ଥିବା ଯୋଗୁଁ ଏ ପର୍ଯ୍ୟନ୍ତ ଏ ସବୁ ହୋଇପାରି ନାହିଁ । ଜଙ୍ଗଲ ଅଞ୍ଚଳରେ ଯାତାୟାତର ସୁବିଧା କରିବାଲାଗି ରାଜ୍ୟ ଯୋଜନାମାନଙ୍କରେ ୧୦୪ ଲକ୍ଷ ଟଙ୍କା ବ୍ୟବସ୍ଥା କରାଯାଇଛି । ଯେଉଁ ସବୁ ଜଙ୍ଗଲରେ ବର୍ତ୍ତମାନ ଛିଡ଼ି ହେଉନାହିଁ, ସେ ସବୁର ସଦ୍ ବ୍ୟବହାର ପାଇଁ ଉଚିତ ଯୋଜନା କରାଯିବ ।

୧୦ । କିନ୍ତୁ ଏ ଗୁଡ଼ିକ ପ୍ରଧାନତଃ ଦୀର୍ଘକାଳସ୍ଥାୟୀ ବ୍ୟବସ୍ଥା । ବର୍ତ୍ତମାନ ଅଧିକ କାଠ ଅଳ୍ପ ସମୟ ଭିତରେ ଯୋଗାଇ ଦେବାଲାଗି ଶଳ ପ୍ରଭୃତି କାଠକୁ ଶୋଧିତ ପାଲଟ ଭଳି ବ୍ୟବହାର କରିବାକୁ ହେବ । ତେଣୁ ପ୍ରତ୍ୟେକ ସରକାରୀ ଜଙ୍ଗଲରେ ଶୋଧିତ କରିବାପାଇଁ ଯନ୍ତ୍ର ଓ ପାଲଟ କରିବାପାଇଁ ଯନ୍ତ୍ର ସ୍ଥାପିତ ହେବା ଦରକାର । ରେଳବାଇମାନଙ୍କର ଯେତେ କାଠ ଦରକାର, ସେ ସମସ୍ତ ପୂରଣ କରିବା ଲାଗି ରେଳବାଇ କର୍ତ୍ତୃପକ୍ଷ ତାଙ୍କ ଅଧୀନରେ ଥିବା ଶୋଧିତ କରିବାର ଯନ୍ତ୍ର ଓ ପାଲଟ କରିବା ଯନ୍ତ୍ରଗୁଡ଼ିକର ସଂଖ୍ୟା ବଢ଼ାଇବା ଆବଶ୍ୟକ ।

୧୧ । ଉପରୋକ୍ତ ବ୍ୟବସ୍ଥାମାନ ଅବଲମ୍ବନ କରାଗଲେ, ବର୍ତ୍ତମାନ ଯେତେ କାଠ ମିଳୁଛି ତାହାଠାରୁ ଆଉ ୧ ଲକ୍ଷ ଟନ୍ ଅଧିକ କାଠ ମିଳିବାର ଆଶା କରାଯାଏ । ଉତ୍ତର ଆଣ୍ଡାମାନର ଉନ୍ନୟନ କରାଗଲେ ଆଉ ୧ ଲକ୍ଷ ଟନ୍ କାଠ ସଂଗୃହୀତ ହେବ । ଜମିଦାରି ଉଠିଯିବା ଫଳରେ ରାଜ୍ୟ ସରକାରମାନଙ୍କଠାରେ ଯେଉଁ ବେସରକାରୀ ଜଙ୍ଗଲମାନ ନ୍ୟସ୍ତ ହୋଇଛି, ଧାରାବାହିକ ଭାବରେ ସେଗୁଡ଼ିକର ସଦ୍ ବ୍ୟବହାର କରାଗଲେ ପ୍ରାୟ ୬୦,୦୦୦ ଟନ୍ କାଠ ମିଳିପାରିବ । ୧୯୫୫-୫୬ ଶେଷବେଳକୁ ଯେଉଁ ପରିମାଣର କାଠ ମିଳିବ ତାହା ଏହିରୂପେ ପ୍ରାୟ ୨୦୦,୦୦୦ ରୁ ୨୫୦,୦୦୦ ଟନ୍ ବା ଶତକଡ଼ା ୧୦ ଭାଗ ପର୍ଯ୍ୟନ୍ତ ବଢ଼ିଯିବ ।

## ବନ୍ୟ ଶିଳ୍ପ ଓ ଜଙ୍ଗଲର ଗୌଣ ଉତ୍ପନ୍ନ

୧୨ । ଜଙ୍ଗଲରୁ ବଡ଼କାଠ ଓ ଜାଳେଣି କାଠ ମିଳେ । ତାହାଛଡ଼ା ଦିଆସିଲି କାଠ, ପ୍ଲାଇଉଡ୍, କାଗଜ ଶିଳ୍ପ ଓ ବିଶେଷ ଭାବରେ କୃତ୍ରିମ ରେଶମ ଶିଳ୍ପ ପାଇଁ ବହୁତ କଞ୍ଚାମାଲ ମିଳେ । ଏ ସବୁ ଶିଳ୍ପର ଉନ୍ନୟନ ପାଇଁ ଯେଉଁସବୁ କାର୍ଯ୍ୟକ୍ରମ ହୋଇଛି ସେ ସବୁ ବିଷୟରେ ଅନ୍ୟତ୍ର ସ୍ଥଳରେ ସୂଚନା ଦିଆଯାଇଛି । ଦିଆସିଲି ଶିଳ୍ପର ପ୍ରସାର ପାଇଁ ଯେତେ କାଠ ଦରକାର ହେବ, ତାହା ପୂରଣ କରିବା ପାଇଁ ୧୯୫୫-୫୬ ବେଳକୁ ଆଣ୍ଡାମାନ ଦ୍ୱୀପପୁଞ୍ଜରୁ ଅଧିକ ପ୍ରାୟ ୪୫,୦୦୦ ଟନ୍ କାଠ ଯୋଗାଇ ଦିଆଯିବ । ଆଣ୍ଡାମାନ ଦ୍ୱୀପପୁଞ୍ଜରୁ ପ୍ରାୟ ୩୦,୦୦୦ ଟନ୍ ପ୍ଲାଇଉଡ୍ କାଠ ଯୋଗାଇ ଦିଆଯାଇ ପାରିବ ଓ ଆମ୍ବ କାଠ ବ୍ୟବହାର କରାଗଲେ ଅଧିକା ୨୦,୦୦୦ ଟନ୍ କାଠ ସଂଗ୍ରହ କରିବା ସମ୍ଭବ ହେବ । କାଗଜ ତିଆରି ପାଇଁ ଯେଉଁ ପ୍ରଧାନ ଜଙ୍ଗଲ ଉତ୍ପନ୍ନ ଟି ଦରକାର, ତାହା ହେଉଛି ବାଉଁଶ । ଦୁରଦୁରାନ୍ତ ଅଞ୍ଚଳରୁ ବାଉଁଶ ସଂଗ୍ରହ କରିବା ପାଇଁ ବହୁପରିମାଣ ମୂଳଧନ ଦରକାର । କିନ୍ତୁ କାଗଜ କଳମାନଙ୍କୁ ଦୀର୍ଘମିଆଦ ପଟ୍ଟା ଦିଆଗଲେ ଯେଉଁ ଅଞ୍ଚଳରୁ ବାଉଁଶ କଟା ହୋଇନାହିଁ, ସେ ଅଞ୍ଚଳର

ଉତ୍ପନ୍ନ ହୋଇ ପାରିବ । ସେହିପରି ନାଇଲନ୍ ଶିଳ୍ପ ଓ ଖବର କାଗଜ ଛପା ପାଇଁ କାଗଜ ଓ କୃତ୍ରିମ ରେଶମ ପାଇଁ ହିମାଳୟର ଦୂର ଅଞ୍ଚଳମାନଙ୍କରେ ଥିବା କୋମଳ କାଠ ସଂଗ୍ରହ କରିବାକୁ ହେବ । ଏ ସବୁ ଅଞ୍ଚଳମାନଙ୍କରେ ବହୁ ପରିମାଣରେ ଉନ୍ନତ କାଠ ମିଳେ । ନୂଆ ଉପାୟରେ ଏହା କିପରି ହୋଇପାରିବ, ତାହା ପରୀକ୍ଷା କରାଯାଉଛି ।

୧୩ । ଅନ୍ୟାନ୍ୟ ମଧ୍ୟ ଜଙ୍ଗଲରୁ ଲାଖ, ଚମଡ଼ା ପଚେଇବା ଜିନିଷ, ଗୋନ୍ଦ ଅଠା, ମହୁ, ଜଡ଼ିବୁଟି ପ୍ରଭୃତି ଉତ୍ପାଦିତ ହୁଏ । ଏ ସବୁର ବାର୍ଷିକ ମୂଲ୍ୟ ୩୩ ଲକ୍ଷ ଟଙ୍କା ବୋଲି ହିସାବ କରାଯାଇଛି । ଏ ସବୁ ଜନସମାଜଙ୍କ ଉପକାରରେ ଯୋଗାଏ ଜିନିଷ; ଯଥା— ଲାଖ ଓ ଅଁଳା ପ୍ରଧାନ ରପ୍ତାନି-ସାମଗ୍ରୀ । ଉଦାହରଣ ସ୍ୱରୂପ ୧୯୫୦-୫୧ରେ ଭାରତ ୧୧.୮୭ କୋଟି ଟଙ୍କାର ଲାଖ ମଞ୍ଜି, ଲାଖ ଓ ଚଟେଇ ଲାଖ ଓ ୧.୩୨ କୋଟି ଟଙ୍କାର ଅଁଳା ଓ ସେଥିରୁ ଉତ୍ପନ୍ନ ପଦାର୍ଥ ରପ୍ତାନି କରିଥିଲା । ଯଦି ଏ ସବୁର ଶ୍ରେଣୀ ନିର୍ଣ୍ଣୟ ହୁଏ ଓ ଏଗୁଡ଼ିକ ବଢ଼ିଆ ଭାବରେ ସଂଗୃହୀତ ହୁଏ, ତେବେ ଏ ସବୁକୁ ରପ୍ତାନି କରିବାର ସମ୍ଭାବନା ରହିଛି । ଜଙ୍ଗଲ ଉତ୍ପନ୍ନର ଶ୍ରେଣୀ ନିର୍ଣ୍ଣୟ ପାଇଁ ଯୋଜନାରେ ବ୍ୟବସ୍ଥା ଅଛି ।

## ଗୋଚର ଜମି

୧୪ । ରାଜ୍ୟ ଜଙ୍ଗଲମାନଙ୍କରେ ଗୋରୁ ଚରିବା ଫଳରେ ବାର୍ଷିକ ପ୍ରାୟ ୯୫ ଲକ୍ଷ ଟଙ୍କା ଆୟ ହୁଏ । ଏହାଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ କଥା ହେଉଛି ଯେ, ଜଙ୍ଗଲମାନଙ୍କରୁ ୧୩ ନିୟୁତ ଗୋରୁ, ୩୦ ଲକ୍ଷ ମଇଁଷି ଓ ୯୦ ଲକ୍ଷ ଅନ୍ୟାନ୍ୟ ଜନ୍ତୁ ଖାଦ୍ୟ ଆହରଣ କରନ୍ତି । ଶସ୍ତାରେ ଗୋରୁଙ୍କୁ ଜଙ୍ଗଲରେ ଚରିବାକୁ ଛାଡ଼ିଦେବାରେ କ୍ଷତି ଅଛି । ଏହା ଫଳରେ ଗୋରୁମାନଙ୍କ ସଂଖ୍ୟା ଅବାଞ୍ଛିତ ଭାବରେ ବଢ଼େ, ଏହା ଛଡ଼ା ଚରାଭୂଇଁର ପରିମାଣ କମିଯାଏ ଏବଂ ଜାତିଆ ଗୋରୁଙ୍କ ସଂଖ୍ୟା କମିଯାଏ । ଜାତିଆ ଗୋରୁଙ୍କ ସଂଖ୍ୟା କମିଯିବା ଫଳରେ ଯେଉଁ କ୍ଷତି ହୁଏ ତା'ର ପୂରଣ ଲାଗି ସେମାନଙ୍କ ସଂଖ୍ୟା ଅତ୍ୟନ୍ତ ବଢ଼ିଯାଏ । ଏଣୁ ଜଙ୍ଗଲରେ ଅବାଧ ଭାବେ ଓ ଅନିର୍ଦ୍ଦିଷ୍ଟ ଭାବରେ ଗୋରୁ ଚରାଇଲେ ଗୋପାଳକମାନଙ୍କର ବେଶ କ୍ଷତି ହୁଏ । ତେଣୁ କୃଷି ଉଦ୍ଦେଶ୍ୟରେ ବା କେବଳ ଦୁଧ ଖାଇବା ଉଦ୍ଦେଶ୍ୟରେ ଗୋରୁମାନେ ଯେତିକି ପରିମାଣରେ ବଣରେ ଚରିବା ଦରକାର, କିମ୍ବା ଗଇସାରେ ଯେତିକି ପରିମାଣରେ ଗୋରୁ ଚରାଇବା ପାଇଁ ଗ୍ରାମ ଅଞ୍ଚଳର କୃଷି ଓ ଅନ୍ୟାନ୍ୟ ବାସିନ୍ଦାଙ୍କୁ ଅନୁମତି ଦିଆଯିବା ଦରକାର । କୃଷି କାମ ପାଇଁ ଓ ଦୁଧ ଦହି ଖାଇବା ପାଇଁ ଯେତିକି ଗୋରୁ ଆବଶ୍ୟକ ତା'ଠାରୁ ଅଧିକ ଯେଉଁ ଗୋରୁ ସେମାନଙ୍କୁ ବ୍ୟବସାୟ ଉଦ୍ଦେଶ୍ୟରେ ରଖାଯାଇଛି ବୋଲି ଧରାଯିବ ଓ ଗୋରୁଠାରୁ ଯାହା ଆଦାୟ ହେଉଥିବ, ତାକୁ ସ୍ୱତନ୍ତ୍ର ଚରାଇ ଫିସ୍ ଧାର୍ଯ୍ୟ କରିବାକୁ ହେବ ।

୧୫ । ଉପକୂଳବର୍ତ୍ତୀ ଅଞ୍ଚଳମାନଙ୍କରେ ଏବେ ମଧ୍ୟ ଯଥେଷ୍ଟ ଚରାଭୂଇଁ ଜମି ରହିଛି; ସାଧାରଣତଃ ଏହାକୁ ଗାଁ ଗୋଚର ଜମି କୁହାଯାଏ । ବହୁଦିନ ହେଲା ଏ ସବୁ ଜମିର ଯତ୍ନ ନିଆଯାଉନାହିଁ । କ୍ରମାଗତ ଭାବରେ ଏ ସବୁରୁ ମୃତ୍ତିକା କ୍ଷୟ ହେଉଛି । ଏ ସବୁ ଜମିରେ ପର୍ଯ୍ୟାୟକ୍ରମେ ଚରାଇର ବ୍ୟବସ୍ଥା କରିବାକୁ ହେବ । ଯଦି ଏହା ନ ହୋଇପାରେ, ତାହାହେଲେ ଏଥିରୁ ଅଧିକ ମୃତ୍ତିକା କ୍ଷୟ ହୋଇ ଆଖପାଖ ଅଞ୍ଚଳର କୃଷିର ଯେପରି କ୍ଷତି ନ ହୁଏ, ସେଥିପାଇଁ ଏଥିରେ ଗଛ ଲଗାଇବାକୁ ହେବ କିମ୍ବା ସ୍ତୂପ କରିବାକୁ ହେବ ।

## ଜଙ୍ଗଲ ପରିଚାଳନା

୧୬ । ଜଙ୍ଗଲଗୁଡ଼ିକ ରାଜ୍ୟ ସରକାରମାନଙ୍କ ଶାସନାଧୀନ ଥିଲେ ମଧ୍ୟ ଜାତୀୟ ଦୃଷ୍ଟିକୋଣରେ ଏଗୁଡ଼ିକର ଯଥେଷ୍ଟ ଗୁରୁତ୍ୱ ରହିଛି । ତେଣୁ ଜଙ୍ଗଲ ପରିଚାଳନାରେ କେତେକ ପରିମାଣରେ କେନ୍ଦ୍ରୀଭୂତ

ସହଯୋଗ ରକ୍ଷିବା ଆବଶ୍ୟକ । ଏଣୁ ସୁପାରିଶ କରାଯାଉଛି ଯେ, ରାଜ୍ୟ ସରକାରମାନଙ୍କର କାର୍ଯ୍ୟକାରୀ ଯୋଜନା ସମ୍ପର୍କୀୟ ନିର୍ଦ୍ଧାରଣରେ ଏକ ସଂକ୍ଷିପ୍ତ ବିବରଣୀ ସମୀକ୍ଷା ଓ ମତାମତ ପାଇଁ ଇନ୍ସପେକ୍ଟର ଜେନେରେଲ ଅଫ୍ ଫରେଷ୍ଟଙ୍କ ପାଖକୁ ପଠାଇ ଦିଆଯିବା ଉଚିତ । ବୈଷୟିକ ସମସ୍ୟା ସଂପର୍କରେ ମତ ଆଦାନପ୍ରଦାନ କରିବା ପାଇଁ ଫରେଷ୍ଟ ଅଫିସରମାନେ ଯେପରି ସମର୍ଥ ହେବେ, ସେଥିପାଇଁ ଆଞ୍ଚଳିକ ଭିତ୍ତିରେ ଥରକୁ ଥର ବିଭିନ୍ନ ରାଜ୍ୟମାନଙ୍କରେ ବୈଠକ ବସାଇବା ମଧ୍ୟ ଦରକାର ।

## ଜଙ୍ଗଲ ସଂପର୍କରେ ଗବେଷଣା ଓ ଶିକ୍ଷା

୧୭ । ଡେରାଡୁନ୍‌ଠାରେ ଥିବା ଫରେଷ୍ଟ ରିସର୍ଚ୍ଚ ଇନ୍ଷ୍ଟିଚ୍ୟୁଟ୍ ଜଙ୍ଗଲ ଓ ଜଙ୍ଗଲ ଉତ୍ପନ୍ନ ଦ୍ରବ୍ୟ ସଂପର୍କରେ ମୂଲ୍ୟବାନ ଗବେଷଣା କାର୍ଯ୍ୟ କରିଛନ୍ତି । ଏ ଇନ୍ଷ୍ଟିଚ୍ୟୁଟ୍ କୀଟ ଆକ୍ରମଣରୁ କାଠ ଓ ବାଉଁଶକୁ ରକ୍ଷା କରିବାର ପ୍ରଣାଳୀ ବାହାର କରିଛନ୍ତି । ଏହା ଛଡ଼ା କାଗଜ, ପ୍ଲାଇଉଡ୍, ଝୁଣା, ତାର୍ପିନ, ସ୍ୟାଣ୍ଡେଲ ଉଡ ଓ ଅନ୍ୟାନ୍ୟ ଅନେକ ଜିନିଷ ତିଆରି ପାଇଁ ଶିଳ୍ପ ସ୍ଥାପନ କରିବାରେ ସାହାଯ୍ୟ କରିଛନ୍ତି । କିନ୍ତୁ ସର୍ବସାଧାରଣଙ୍କ ପାଖରେ ଗବେଷଣାର ଫଳ ପହଞ୍ଚାଇବା ପାଇଁ ଗୋଟିଏ ଉପଯୁକ୍ତ ଏକ୍ସଟେନ୍‌ସନ୍ ଅଫିସ ସ୍ଥାପିତ ହେବା ଦରକାର; ଆହୁରି ମଧ୍ୟ ଇନ୍ଷ୍ଟିଚ୍ୟୁଟ୍ ଓ ଶିଳ୍ପମାନଙ୍କ ଭିତରେ ସମ୍ପର୍କର ସେତୁ ସ୍ଥାପିତ ହେବା ଦରକାର ।

ଦକ୍ଷିଣରେ ଗୋଟିଏ ସ୍ୱତନ୍ତ୍ର ଗବେଷଣା କେନ୍ଦ୍ର ସ୍ଥାପନ କରିବାର ଆବଶ୍ୟକତା ସମ୍ବନ୍ଧରେ ଚିନ୍ତା କରାଯିବା ଆବଶ୍ୟକ ।

## ଜଙ୍ଗଲର ଆଦିବାସୀ

୧୮ । ବହୁତ ଜାତିର ଆଦିବାସୀମାନେ ଜଙ୍ଗଲ ଅଞ୍ଚଳରେ ବାସ କରନ୍ତି । ଅନୁନ୍ନତ ଶ୍ରେଣୀର ଉନ୍ନତି ପାଇଁ ଯେଉଁ କାର୍ଯ୍ୟକ୍ରମ ପ୍ରସ୍ତୁତ ହୋଇଛି, ତହିଁରେ ସେମାନଙ୍କର ମଙ୍ଗଳବିଧାନର ବ୍ୟବସ୍ଥା କରାଯାଇଛି । ଏ ବିଷୟ ଅନ୍ୟତ୍ର ବର୍ଣ୍ଣନା କରାଯାଇଛି । ଅଧିକାଂଶ ଜଙ୍ଗଲ-ଉତ୍ପନ୍ନ ଠିକାଦାରମାନଙ୍କ ଜରିଆରେ ସଂଗୃହୀତ ହୁଏ । ସେମାନଙ୍କଠାରେ ଏହି ନିରୀହ ଲୋକମାନଙ୍କୁ ଶୋଷଣ କରିବା ପ୍ରବୃତ୍ତି ରହିଛି । ଠିକାଦାର ପ୍ରଥା ଲୋପ କରିବା ପାଇଁ ବମ୍ବେ ରାଜ୍ୟର ଜଙ୍ଗଲରେ ଥିବା ଆଦିବାସୀମାନଙ୍କର ସମବାୟ ସମିତି ସଂଗଠିତ ହୋଇ ସଫଳତା ସହିତ କାର୍ଯ୍ୟ କରୁଛି । ଅନ୍ୟାନ୍ୟ ସ୍ଥାନରେ ମଧ୍ୟ ଏ ନୀତି ଅନୁସୃତ ହେବା ଦରକାର । ସମବାୟ ସମିତିଗୁଡ଼ିକରେ ସଂଗଠନ ଦାୟିତ୍ୱ ଫରେଷ୍ଟ ଡିପାର୍ଟମେଣ୍ଟକୁ ଦିଆଯିବ ।

୧୯ । ଆଦିବାସୀମାନେ ଯେଉଁ ପୋଡ଼ୁ ଚାଷ କରନ୍ତି, ତାହାଦ୍ୱାରା ଅନେକ ଜଙ୍ଗଲର କ୍ଷୟକ୍ଷତି ହେଉଛି । ସେମାନଙ୍କର ଅଭ୍ୟାସ ଛଡ଼ାଇବା ଲାଗି ସମୟ ଦରକାର । କିନ୍ତୁ ସ୍ଥାୟୀ ଓ ବହୁଳ ଚାଷ କରିବା ଦିଗରେ ସେମାନଙ୍କୁ କ୍ରମେ କ୍ରମେ ପ୍ରବର୍ତ୍ତାଇବାକୁ ହେବ । ଯେଉଁଠାରେ ସମ୍ଭବ ଜଙ୍ଗଲଠାରୁ ଦୂରରେ ସେମାନଙ୍କୁ ଚାଷଯୋଗ୍ୟ ଜମି ଦେବାକୁ ହେବ ଏବଂ ଥାକ ଥାକ କରି ଚାଷ କରିବା ବିଷୟ ସେମାନଙ୍କୁ ଶିଖାଇବାକୁ ହେବ । ଯେଉଁ ଅଞ୍ଚଳମାନଙ୍କରେ ଫଳ ଚାଷ ହୋଇ ପାରିବ, ସେଠାରେ ଯାତାୟାତ ବ୍ୟବସ୍ଥାରେ ଉନ୍ନତି କରାଗଲେ ଓ ଉନ୍ନତ ଧରଣର ଫଳଗଛ ଲଗାଇଲେ ଫଳ-ଚାଷ ପାଇଁ ଲୋକେ ଉତ୍ସାହିତ ହେବେ । ଏ ସବୁ ବ୍ୟବସ୍ଥା ହୋଇ ପାରିଲେ ଆଦିବାସୀମାନେ ପୋଡ଼ୁଚାଷ ଭଳି କ୍ଷତିକାରକ ପ୍ରଥା ଛାଡ଼ି ସ୍ଥାୟୀ ଚାଷରେ ମନ ଦେବେ ।

## କାର୍ଯ୍ୟକ୍ରମ

୨୦ । ଜଙ୍ଗଲ ଉନ୍ନୟନ କାର୍ଯ୍ୟକ୍ରମରେ ଥିବା ବିଷୟମାନଙ୍କରେ କେଉଁ କାମ ଆଗେ ଓ କେଉଁ

ଜଗନ୍ନାଥପୁର ( କେନ୍ଦୁଝର ) ଆଶ୍ରମ ସ୍କୁଲରେ ଅଭିଭାବକ ଦିବସ
( ମନ୍ତ୍ରୀ ଶ୍ରୀ ସୁନାରାମ ସରେନଙ୍କ ପୌରୋହିତ୍ୟରେ )



ଭୁବନେଶ୍ୱର ନୂଆ ରାଜଧାନୀରେ ୧୯୫୪ ଜାନୁଆରୀ ୨୭ରେ
ଅନୁଷ୍ଠିତ ଆଦିବାସୀ ମେଳାର ମୁଖ୍ୟ ତୋରଣ



ଆଦିବାସୀ ମେଳାରେ ମୁଖ୍ୟମନ୍ତ୍ରୀ
ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କ ଭାଷଣ

ଗ୍ରାମ ସଙ୍ଗେ ଜଡ଼ିତ, ତାହା ବିଭିନ୍ନ ଅଞ୍ଚଳରେ ଭିନ୍ନ ଭିନ୍ନ ଆକାର ଧାରଣ କରିବ; କିନ୍ତୁ ସାଧାରଣତଃ ଏ ବ୍ୟବସ୍ଥା ନିମ୍ନଲିଖିତମତେ କରାଯିବ :—

(୧) ଯେଉଁଠାରେ ରାଜ୍ୟ ସରକାରଙ୍କ ନିୟନ୍ତ୍ରଣକୁ ଅଧିକ ଜଙ୍ଗଲ ଆସିଥିବ, ସେଠାରେ ଜଙ୍ଗଲ ପରିଚାଳନା ଦୃଢ଼ କରିବାକୁ ହେବ ।

(୨) ଯେଉଁ ଅଞ୍ଚଳରୁ ବେଶି ଗଛ କାଟି ନିଆଯାଇଥିବ ସେ ଅଞ୍ଚଳମାନଙ୍କରେ ନୂଆ ଗଛ ଲଗାଇବାକୁ ହେବ ।

(୩) ଯେଉଁ ଅଞ୍ଚଳରେ ବହୁପରିମାଣରେ ମୃତ୍ତିକା କ୍ଷୟ ହୋଇଥିବ, ସେଠାରେ ନୂଆ ଗଛ ଲଗାଇବାକୁ ହେବ ।

(୪) ଜଙ୍ଗଲରେ ଯାତାୟାତ ବ୍ୟବସ୍ଥାର ଉନ୍ନୟନ କରାଯିବ ।

(୫) ଗାଁ ଜୋତା ଓ ବଗିଚାର ଉନ୍ନୟନ କରାଯିବ ।

(୬) ଯେଉଁ ସବୁ କାଠର ବ୍ୟବହାର ହେଉନାହିଁ, ସେ ସବୁକୁ ରାସାୟନିକ ଉପାୟରେ ପୋଷଣ ଓ ମାଲିସ କରି ଅଧିକ ପରିମାଣ କାଠ ଯୋଗାଇବାକୁ ହେବ ।

ଏ ସବୁ ଉଦ୍ଦେଶ୍ୟକୁ ଭିତ୍ତି କରି ଜଙ୍ଗଲ ଯୋଜନାରେ ନିମ୍ନଲିଖିତ ଖର୍ଚ୍ଚର ବ୍ୟବସ୍ଥା କରାଯାଇଛି:—

| | | (ଲକ୍ଷ ଟଙ୍କା) |
|---|---|---|
| ୧ । ଜଙ୍ଗଲ ଉନ୍ନୟନ | ... | ୬୧୧.୩ |
| ୨ । ପରିଚାଳନା | ... | ୨୫୯.୪ |
| ୩ । ଜଙ୍ଗଲ ଶିଳ୍ପ | ... | ୪୯.୫ |
| ୪ । ଶିକ୍ଷା ଓ ତାଲିମ | ... | ୩୯.୩ |
| ୫ । ଗବେଷଣା | ... | ୧୦.୦ |
| ମୋଟ | ... | ୯୬୯.୫ |

ଯାତାୟାତ ଉନ୍ନୟନ ବ୍ୟବସ୍ଥା, ମୃତ୍ତିକା ସଂରକ୍ଷଣ, ଗ୍ରାମ ବଗିଚା ସ୍ଥାପନ ଓ ବେସରକାରୀ ଜଙ୍ଗଲ ଓ ପଡ଼ିଆ ଜମିର ଉନ୍ନତି ଜଙ୍ଗଲ ଉନ୍ନୟନ ଯୋଜନାର ଅନ୍ତର୍ଭୁକ୍ତ ।

# ଦ୍ୱାବିଂଶ ପରିଚ୍ଛେଦ

## ମୃତ୍ତିକା ସଂରକ୍ଷଣ

ମୃତ୍ତିକା ସଂରକ୍ଷଣର ବ୍ୟାପକ ଅର୍ଥ କେବଳ ମୃତ୍ତିକା କ୍ଷୟ ରୋଧ କରିବାକୁ ବୁଝାଏ ନାହିଁ । କିନ୍ତୁ ଉପଯୁକ୍ତ ସ୍ତରରେ ମୃତ୍ତିକାର ଉତ୍ପାଦିକା ଶକ୍ତି ରକ୍ଷା କରିବା ଉଦ୍ଦେଶ୍ୟରେ ଅନ୍ୟାନ୍ୟ ସମସ୍ତ ବ୍ୟବସ୍ଥାକୁ ମଧ୍ୟ ବୁଝାଇଥାଏ । ଏ ଅଧ୍ୟାୟରେ କେବଳ ମୃତ୍ତିକା କ୍ଷୟ ନିୟନ୍ତ୍ରଣ କରିବା ବ୍ୟବସ୍ଥା ସଂପର୍କରେ ବର୍ଣ୍ଣନା କରାଯାଇଛି । ମୃତ୍ତିକା କ୍ଷୟ ହେଉଥିବା ଫଳରେ ଦେଶରେ ବହୁପରିମାଣର ଜମି ଅକାମୀ ହୋଇ ପଡ଼ିଛି; ଅଧିକନ୍ତୁ ଅଧିକ ଜମିର ଆଂଶିକ କ୍ଷତି ଘଟିଛି ଓ ସେ ସବୁର ଉତ୍ପାଦିକା ଶକ୍ତି ମଧ୍ୟ ହ୍ରାସ ହୋଇଛି । ଭୂମିର ଉପରିଭାଗରୁ ମୃତ୍ତିକା କ୍ଷୟ ହେଲେ ଉର୍ବର ମୃତ୍ତିକାତକ ଧୋଇ ହୋଇଯାଏ । ଦେଶର ଅନେକ ଅଞ୍ଚଳରେ ଏପରି ମୃତ୍ତିକା କ୍ଷୟ ଘଟୁଛି; ଯାହାଦ୍ୱାରା ବର୍ଷକୁ ବର୍ଷ ଘୋର କ୍ଷତି ହେଉଛି । ପ୍ରଥମେ ଖଣ୍ଡ ଖଣ୍ଡ ମୃତ୍ତିକା କ୍ଷୟ ହେବା ପରେ ବିଭିନ୍ନ ସ୍ତରର ମୃତ୍ତିକା କ୍ଷୟ ଆରମ୍ଭ ହୁଏ । ଏପରି ମୃତ୍ତିକା କ୍ଷୟ ମଧ୍ୟ ଧୀରେ ଧୀରେ ବଢ଼ୁଛି । ରାଜସ୍ଥାନ ମରୁଭୂମି ସୀମାରେ ବାୟୁ ଯୋଗୁଁ ମୃତ୍ତିକା କ୍ଷୟ ଘଟୁଛି ଓ ଉର୍ବର ଜମି ଉପରେ ମରୁଭୂମିର ବାଲି ଜମା ହୋଇଯାଉଛି ।

୨ । ଜଙ୍ଗଲ ଓ ଚରାଣିଆ ଜମିରେ ଥିବା ଗଛବୃକ୍ଷ ଧ୍ୱଂସ ହେବାଦ୍ୱାରା ମାଟି ଧୋଇ ହୋଇଯିବା, ମରୁଭୂମିର ତଟଦେଶରେ ଥିବା ମାଟିରେ ବାଲି ମାଡ଼ିଯିବା ଓ ଅନ୍ୟାନ୍ୟ ଅଞ୍ଚଳରେ ମୃତ୍ତିକା କ୍ଷୟ ଘଟିବା ମୃତ୍ତିକା କ୍ଷୟର ପ୍ରଧାନ କାରଣ । ଜମିରେ

ଚାଷ ପ୍ରଣାଳୀରେ ତ୍ରୁଟି ରହିଥିଲେ ମଧ୍ୟ ଯଥେଷ୍ଟ ମୃତ୍ତିକା କ୍ଷୟ ଘଟିଥାଏ, ଯଥା—ଗଡ଼ାଣିଆ ଜମିର ଢାଲ ଆଡ଼େ ଆଡ଼ ହଳ ନ କଲେ ବା ଫସଲଗୁଡ଼ିକ ପର୍ଯ୍ୟାୟକ୍ରମେ ଚାଷ କରା ନ ଗଲେ ମୃତ୍ତିକା କ୍ଷୟ ହୋଇଥାଏ । ଜମି ପଡ଼ିଆ ପକାଇଲେ, ଗୋଚର ଓ ଅନାବାଦୀ ଜମିର ଅଣଦେଖା କଲେ ମଧ୍ୟ ବହୁତ କ୍ଷତ ହୋଇଥାଏ ।

୩ । ମାଟି ଧୋଇ ହୋଇଯିବା ବନ୍ଦ କରିବା ବା ଯେଉଁଠି ଯେ ମାଟି ଧୋଇ ହୋଇଯାଇଛି ତାହାର ଉତ୍ପାଦନ ଶକ୍ତି ବଢ଼ାଇବା ପାଇଁ ନିମ୍ନଲିଖିତ ବ୍ୟବସ୍ଥାଗୁଡ଼ିକୁ କାମରେ ଲଗାଇବାକୁ ହେବ ।

(୧) ଗଛ ଲଗାଇ ଜଙ୍ଗଲ ବଢ଼ାଇବା । ଯେଉଁଠି ଯେ ଜଙ୍ଗଲ ଅଛି, ବୈଜ୍ଞାନିକ ଉପାୟରେ ତାକୁ ରକ୍ଷା କରିବା ।

(୨) କୃଷି ପ୍ରଣାଳୀର ଉନ୍ନତି କରିବା । ଏ ପ୍ରଣାଳୀ ଅନୁସାରେ ଉପରୁଆଡ଼ୁ ତଳଆଡ଼କୁ ହଳ ବୁଲାଇବା ବଦଳରେ ଗଡ଼ାଣିଆ ଜମିରେ ଢାଲ ଆଡ଼େ ଆଡ଼େ ଚାଷ କରାଯାଏ । ଠିକରୂପେ ପର୍ଯ୍ୟାୟକ୍ରମେ ଚାଷ କରି ଗୋଟିକ ପରେ ଗୋଟିଏ ଫସଲ ଉଠାଇବା, ଯଥେଷ୍ଟ ଖତ ଓ ସାର ଲଗାଇବା; ପଡ଼ିଆ ଓ ଅନାବାଦୀ ଜମିର ହେପାଜତ କରିବା ।

(୩) ବନ୍ଧବାନ୍ଧ ବ୍ୟବସ୍ଥା । ଏ ବ୍ୟବସ୍ଥା ଅନୁସାରେ ବନ୍ଧ ଓ ବାଡ଼ ତିଆରି କରିବା, ବଳକା ପାଣି ବାହାର ଯିବା ଲାଗି ନାଳ କାଟିବା, ଯେଉଁଠାରେ ଗଳିଆ ପଡ଼ୁଥିବ, ସେଠାରେ ତା ମୁହଁ ବନ୍ଦ କରିଦେବା ।

୪ । କେତେକଗୁଡ଼ିଏ ରାଜ୍ୟରେ କେତେ ବର୍ଷ ହେଲା ମୃତ୍ତିକା କ୍ଷୟ କମାଇବା ବ୍ୟବସ୍ଥା ଆରମ୍ଭ ହୋଇଛି ସତ; କିନ୍ତୁ ଏ ସମସ୍ୟାର ସମାଧାନ ପାଇଁ ଏ ପର୍ଯ୍ୟନ୍ତ ସମୁଦାୟ ଜାତିଦୃଷ୍ଟିରୁ କାମ ହୋଇ ନାହିଁ । ମୃତ୍ତିକା ସଂରକ୍ଷଣ ପାଇଁ ଯୋଜନାରେ ଯେଉଁ କାର୍ଯ୍ୟକ୍ରମ ତିଆରି ହୋଇଛି, ଏ ବିଷୟରେ ଥିବା ବିରାଟ ସମସ୍ୟାଗୁଡ଼ିକ ଦୃଷ୍ଟିରେ ତାହା ସାମାନ୍ୟ ପରି ଜଣାଯିବ । କିନ୍ତୁ ଏହାର ସମାଧାନ ପାଇଁ ସାରା ଦେଶରେ ଯେଉଁ ଉଦ୍ୟମ ଚାଲିବ, ଏଇଠାରୁ ତାହା ଆରମ୍ଭ ହେଲା । ଏ ଦୃଷ୍ଟିରୁ ଦେଖିଲେ ଏ କାର୍ଯ୍ୟକ୍ରମର ବିଶେଷ ଗୁରୁତ୍ୱ ଅଛି । ଏ ପର୍ଯ୍ୟନ୍ତ ଏ ବିଷୟରେ ଯେଉଁ କାମ ହୋଇଛି, ତାହା ଅତି ସାମାନ୍ୟ । ଏ ଅବସ୍ଥାରେ ଗୋଟାଏ ବଡ଼ କାର୍ଯ୍ୟକ୍ରମ ହାତକୁ ନେବାର ବେଶୀ ସୁବିଧା ନାହିଁ । କେଉଁ ମାଟି କେଉଁ ଧରଣର ସେ ବିଷୟରେ ଯଥେଷ୍ଟ ତଥ୍ୟ ମିଳୁନାହିଁ, ଦେଶର ବିଭିନ୍ନ ଅଞ୍ଚଳରେ କି ପ୍ରକାର ଓ କେଉଁ ହାରରେ ମୃତ୍ତିକା କ୍ଷୟ ଘଟୁଛି ସେ ସମ୍ପର୍କରେ ମଧ୍ୟ ଯଥାଯଥ ତଥ୍ୟ ମିଳୁନାହିଁ । ଏ ବିଷୟରେ ଶିକ୍ଷା ପାଇଥିବା ଓ ଅଭିଜ୍ଞତା ଥିବା ଲୋକ ମଧ୍ୟ ବେଶୀ ନାହାନ୍ତି । ଯୋଜନା ସମୟ ଭିତରେ ଏ ସବୁ ଅଭାବ କେତେକ ପରିମାଣରେ ଦୂର ହୋଇ ପାରିବ । ଏ ସବୁ କାମ ପାଇଁ କେନ୍ଦ୍ର ଓ ରାଜ୍ୟମାନଙ୍କରେ ଶାସନ ବ୍ୟବସ୍ଥା ସର୍ଭେ ଓ ଗବେଷଣା ପାଇଁ ଅନୁଷ୍ଠାନ ସ୍ଥାପନ କରାଯିବ, ଯେଉଁସବୁ ତଥ୍ୟ ଦରକାର ତାହା ସଂଗ୍ରହ କରାଯିବ ଓ ଏ ସମ୍ପର୍କରେ ଯେଉଁ ଆଇନ ତିଆରି ହେବା ଆବଶ୍ୟକ, ଉପଯୁକ୍ତ ଆଇନ ପ୍ରଣୟନ ଦ୍ୱାରା ସେ କାମ କରାଯିବ । ପ୍ରତ୍ୟେକ ରାଜ୍ୟ ସରକାରଙ୍କୁ ଗୋଟିଏ ଲେଖାଏଁ ଭୂମି ଉପଯୋଗ ଓ ମୃତ୍ତିକା ସଂରକ୍ଷଣ ବୋର୍ଡ଼ ସ୍ଥାପନ କରିବାକୁ ହେବ । ଏ ବୋର୍ଡ଼ ରାଜ୍ୟରେ ମୃତ୍ତିକା କ୍ଷୟ ସମସ୍ୟାର ଜଟିଳତା ଅନୁଶୀଳନ କରି ସାରିବା ପରେ ଗୋଟିଏ 'ମୃତ୍ତିକା ସଂରକ୍ଷଣ କାର୍ଯ୍ୟକ୍ରମ' ତିଆରି କରିବାର ଦାୟିତ୍ୱ ତାଙ୍କ ଉପରେ ଦିଆଯିବ । ଯୋଜନା କାଳ ଭିତରେ ଏଥି ପାଇଁ କେତେଗୁଡ଼ିଏ ଉପଯୁକ୍ତ ଆକାରର ଜମି ସ୍ଥିର କରିବାକୁ ହେବ । ଏଗୁଡ଼ିକ ସେ ଅଞ୍ଚଳର ଜମି ଭଳି ହେବା ଆବଶ୍ୟକ । ଯେଉଁ ରାଜ୍ୟମାନଙ୍କର ଏହା ଦରକାର ହେବ, ସେମାନଙ୍କର କାର୍ଯ୍ୟକ୍ରମ ତିଆରି

କରିବା ପାଇଁ ବା ପରେ ସେମାନଙ୍କର କାର୍ଯ୍ୟକ୍ରମକୁ କାର୍ଯ୍ୟରେ ପରିଣତ କରିବା ପାଇଁ ସେମାନେ କେନ୍ଦ୍ରରେ ଥିବା ବିଶେଷଜ୍ଞମାନଙ୍କଠାରୁ ସାହାଯ୍ୟ ପାଇ ପାରିବେ । ଏ ସମ୍ପର୍କରେ ରାଜ୍ୟ ସରକାରମାନଙ୍କୁ ଯେଉଁ ଖର୍ଚ୍ଚ କରିବାକୁ ପଡ଼ିବ, ତାହାଛଡ଼ା ଯୋଜନା କାଳ ମଧ୍ୟରେ ଏ ସବୁ କାର୍ଯ୍ୟକ୍ରମରେ ଖର୍ଚ୍ଚ ହେବା ଲାଗି କେନ୍ଦ୍ର ସରକାରଙ୍କଦ୍ୱାରା ୨କୋଟି ଟଙ୍କାର ବ୍ୟବସ୍ଥା କରାଯାଇଛି ।

## ମୃତ୍ତିକା ସଂରକ୍ଷଣ ସଂଘ

୫ । କୃଷୀମାନେ ନିଜେ ଯେଉଁ ପରିମାଣରେ ମୃତ୍ତିକା ସଂରକ୍ଷଣ କାର୍ଯ୍ୟ କରିବେ ସେଥିପାଇଁ ସମବାୟ ସଂଘମାନ ସ୍ଥାପନ କରିବାକୁ ସେମାନଙ୍କୁ ଉତ୍ସାହିତ କରାଯିବ । ଗୋଟିଏ ଅଞ୍ଚଳର କେତେକ ନିର୍ଦ୍ଦିଷ୍ଟସଂଖ୍ୟକ କୃଷୀ ଯଦି ସମବାୟ ସଂଘ ସ୍ଥାପନ କରିବାକୁ ସ୍ଥିର କରନ୍ତି, ତେବେ ଏ ସବୁ ସଂଘକୁ ଆଇନ ଅନୁସାରେ ସ୍ୱୀକୃତ ଦିଆଯିବ । ତା' ପରେ ଏଭଳି ସଂଘରେ ଯେଉଁ ସବୁ ଅଞ୍ଚଳର କୃଷୀ ଥିବେ, କୃଷି ପ୍ରଣାଳୀରେ ଯେଉଁ ପ୍ରକାର ଉନ୍ନତି କରିବାକୁ ସଂଘ ସ୍ଥିରକରିବେ, ସେମାନଙ୍କୁ ସେ ପ୍ରକାର ଉନ୍ନତି ବିଧାନ କରିବାକୁ ହେବ । ଅନୁମୋଦିତ ମୃତ୍ତିକା ସଂରକ୍ଷଣ କାର୍ଯ୍ୟକ୍ରମ ପାଇଁ ସରକାରଙ୍କଠାରୁ ବୈଷୟିକ ନିର୍ଦ୍ଦେଶ ଓ ଆର୍ଥିକ ସାହାଯ୍ୟ ପାଇବା ବିଷୟରେ ଏଭଳି ସଂଘମାନଙ୍କ କଥା ପ୍ରଥମେ ବିଚାର କରାଯିବ ।

## ଆଇନ ପ୍ରଣୟନ

୬ । ନିମ୍ନଲିଖିତ କାର୍ଯ୍ୟମାନ କରିବା ସକାଶେ ତାଙ୍କୁ କ୍ଷମତା ଦେବାପାଇଁ ରାଜ୍ୟ ସରକାରଙ୍କୁ ଆଇନ ପ୍ରଣୟନ କରିବାକୁ ହେବ—

(୧) କୃଷୀର ଜମିରେ ଉନ୍ନତି ଘଟାଇବାକୁ ହେବ ଏବଂ କୃଷୀ ଓ ସରକାରଙ୍କ ଭିତରେ ଖର୍ଚ୍ଚ ବାଣ୍ଟି ଦେବାକୁ ହେବ;

(୨) "କୃଷୀ ସମବାୟ ସଂଘ" ଗଠନ କରିବାକୁ ହେବ, ଏବଂ

(୩) କେତେକ ଅଞ୍ଚଳକୁ "ସଂରକ୍ଷିତ ଅଞ୍ଚଳ" ରୂପେ ଘୋଷଣା କରିବାକୁ ହେବ ଓ ଅଧିକାଂଶ ଜମିକୁ ମୃତ୍ତିକା କ୍ଷୟ, ବନ୍ୟା, ପଟୁ ବା ବାୟୁ-ପ୍ରବାହ ଜନିତ ମୃତ୍ତିକାକ୍ଷୟରୁ ରକ୍ଷାକରିବା ପାଇଁ ସେ ସବୁ ଅଞ୍ଚଳରେ କୃଷି ପ୍ରଣାଳୀ ଉପରେ କଟକଣା ଜାରି କରିବାକୁ ହେବ ।

## ଗବେଷଣା ଓ ପ୍ରଦର୍ଶନ

୭ । ଡେରାଡୁନ୍ର ଫରେଷ୍ଟ ରିସର୍ଚ୍ଚ ଇନଷ୍ଟିଚ୍ୟୁଟ୍ରେ ଗୋଟିଏ ମୃତ୍ତିକା ସଂରକ୍ଷଣ ଶାଖା ପ୍ରତିଷ୍ଠା କରିବା ପାଇଁ ପଞ୍ଚବାର୍ଷିକ ଯୋଜନାରେ ବ୍ୟବସ୍ଥା କରାଯାଇଛି । ଏଠାରେ ମୃତ୍ତିକା ସଂରକ୍ଷଣ ସମ୍ବନ୍ଧ ସଂପୃକ୍ତ ବିଭିନ୍ନ ସମସ୍ୟାରେ ଗବେଷଣା କରାଯିବ । ଏହାଛଡ଼ା ଦେଶର ବିଭିନ୍ନ ଅଞ୍ଚଳରେ ଛଅଟି ଗବେଷଣା ଓ ପ୍ରଦର୍ଶନ କେନ୍ଦ୍ର ସ୍ଥାପନ କରାଯିବ । ବ୍ୟାପକ ଭାବରେ ମୃତ୍ତିକା କ୍ଷୟ ହୋଇ ଯେଉଁ ସବୁ ଅଞ୍ଚଳର କ୍ଷତି ହେଉଛି, ଯୋଜନା କାଳମଧ୍ୟରେ ସେହିସବୁ ଅଞ୍ଚଳରେ ମୃତ୍ତିକା ସଂରକ୍ଷଣ କାର୍ଯ୍ୟ ହେବ ବୋଲି ଠିକ୍ ହୋଇଛି ।

ମୃତ୍ତିକା ସଂରକ୍ଷଣ ଉଦ୍ଦେଶ୍ୟରେ ଗୋଟିଏ ଦୀର୍ଘକାଳ ସ୍ଥାୟୀ କାର୍ଯ୍ୟକ୍ରମ ତିଆରି କରାଯିବ । ମୃତ୍ତିକାର ଲକ୍ଷଣ ସମ୍ପର୍କରେ ବର୍ତ୍ତମାନ କି ପରିମାଣରେ ଭୂମିର ବ୍ୟବହାର କରାଯାଉଛି, ସେ ସମ୍ପର୍କରେ ତଥ୍ୟ ସଂଗ୍ରହ କରିବାକୁ ସମଗ୍ର ଭାରତରେ ମୃତ୍ତିକା ଓ ଭୂମି ଉପଯୋଗ ବିଷୟରେ ଅନୁସନ୍ଧାନ ହେବା ଦରକାର ବୋଲି ପ୍ରସ୍ତାବ କରାଯାଇଛି । ଏକପ୍ରକାର ଢଙ୍ଗରେ ଜମିର ଶ୍ରେଣୀ ବିଭାଗ କରିବା ଓ ମାନଚିତ୍ର ପ୍ରସ୍ତୁତ କରିବା ପାଇଁ ଏହି ଅନୁସନ୍ଧାନ ଗୋଟିଏ କେନ୍ଦ୍ର ଅନୁଷ୍ଠାନ ଦ୍ୱାରା କରାଯିବା ଦରକାର ।

## ପଲ୍ଲୀସମାଜ ଯୋଜନା ଅଞ୍ଚଳରେ ମୃତ୍ତିକା ସଂରକ୍ଷଣ

୯ । ସମତଳ ଅଞ୍ଚଳମାନଙ୍କରେ ଅବସ୍ଥିତ ପଲ୍ଲୀସମାଜ ଯୋଜନା ଅଞ୍ଚଳଗୁଡ଼ିକରେ ମୃତ୍ତିକା କ୍ଷୟ ଗୋଟିଏ ବଡ଼ ସମସ୍ୟା ନୁହେ । କିନ୍ତୁ ପାହାଡ଼ିଆ ଅଞ୍ଚଳମାନଙ୍କରେ ଯେଉଁଠାରେ କି ମୃତ୍ତିକାରେ ଥିବା ଉର୍ବର ଉପାଦାନଗୁଡ଼ିକ କ୍ରମଶଃ କ୍ଷୟ ହୋଇ ଧୋଇ ହୋଇ ଯାଉଛି—ମୃତ୍ତିକା ସଂରକ୍ଷଣ ବ୍ୟବସ୍ଥା ଉନ୍ନୟନ କାର୍ଯ୍ୟକ୍ରମର ଗୋଟିଏ ପ୍ରଧାନ ବିଷୟ । ସେହିପରି ଦେଶର ମରୁ ଓ ଅର୍ଦ୍ଧ ମରୁ ଅଂଶ, ଯଥା— ରାଜସ୍ଥାନ ଅନ୍ତର୍ଗତ ଯୋଜନା ଅଞ୍ଚଳମାନଙ୍କରେ ଗଛବୃକ୍ଷ ଓ ଘାସ ଲଗାଇ ଜଙ୍ଗଲ କରିବା ପାଇଁ ଉନ୍ନୟନ କାର୍ଯ୍ୟକ୍ରମରେ ବ୍ୟବସ୍ଥା ରହିବା ଆବଶ୍ୟକ ।

## ନଦୀ ଉପତ୍ୟକା ଯୋଜନା ଅଞ୍ଚଳମାନଙ୍କରେ ମୃତ୍ତିକା ସଂରକ୍ଷଣ

୧୦ । ଯେଉଁସବୁ ଅଞ୍ଚଳରୁ ନଦୀ ଭିତରକୁ ପାଣି ବହିଆସେ, ସେଠାରେ ମୃତ୍ତିକା ସଂରକ୍ଷଣ ପାଇଁ ଯଥେଷ୍ଟ ବ୍ୟବସ୍ଥା ହେବା ଦରକାର । ଜଳ-ସମ୍ପଦର ଉପଯୁକ୍ତ ଉନ୍ନୟନ ପାଇଁ ଏ ବ୍ୟବସ୍ଥା ଯେପରି ଆବଶ୍ୟକ, ବନ୍ଧ ଓ ଜଳାଶୟ ନିର୍ମାଣ ପାଇଁ ମଧ୍ୟ ସେହିପରି ଆବଶ୍ୟକ । ଯଦି ଏପରି ବ୍ୟବସ୍ଥା କରା ନ ଯାଏ ଓ ଅବାରିତ ଭାବରେ ମୃତ୍ତିକା କ୍ଷୟ ଘଟେ, ତାହାହେଲେ ପଟୁମାଟି ଯୋଗୁଁ ବନ୍ଧ ଖାଇଯାଏ ଓ ଜଳାଶୟ କ୍ରମେ ପୋତି ହୋଇଯିବେ । ସେ ସବୁର କାର୍ଯ୍ୟକାରିତା ନଷ୍ଟ ହୁଏ ଓ ଏହାକୁ ଚଳାଇବା ଖର୍ଚ୍ଚ ବଢ଼ିଯାଏ । ତେଣୁ ଯେଉଁ ଅଞ୍ଚଳରୁ ନଦୀ ଭିତରକୁ ପାଣି ବହିଆସେ, ସେ ଅଞ୍ଚଳର ମୃତ୍ତିକା ସଂରକ୍ଷଣ ପାଇଁ ପ୍ରତ୍ୟେକ ନଦୀ ଉପତ୍ୟକା ଯୋଜନାର କାର୍ଯ୍ୟକ୍ରମରେ ବ୍ୟବସ୍ଥା ରହିବା ଦରକାର । ମୃତ୍ତିକା କ୍ଷୟ ଓ ଜମିର ବ୍ୟବହାର ସମ୍ପର୍କରେ ଅନୁସନ୍ଧାନ କରାଯିବା ଦରକାର ଓ ଗୁରୁତ୍ୱପୂର୍ଣ୍ଣ ଅଞ୍ଚଳଗୁଡ଼ିକର ସୀମାସରହଦ ସ୍ଥିର ହେବା ଦରକାର ଓ ଘାସପଡ଼ିଆ ଓ ଗଛ ବଣକୁ ବିସ୍ତୃତ କରି ଜଙ୍ଗଲ ଓ ଅନ୍ୟାନ୍ୟ ଉଦ୍ଭିଦକୁ ରକ୍ଷା କରିବା ପାଇଁ ବ୍ୟବସ୍ଥା କରାଯିବା ଦରକାର । ମୃତ୍ତିକା ସଂରକ୍ଷଣ କାର୍ଯ୍ୟକ୍ରମକୁ ଭଲଭାବରେ ସମ୍ପାଦନ କରିବା ପାଇଁ ସଂଘ ଗଠନ କରିବାକୁ ନଦୀ ପାର୍ଶ୍ୱବର୍ତ୍ତୀ ଅଞ୍ଚଳର ଲୋକମାନଙ୍କୁ ଅନୁରୋଧ କରାଯିବା ଦରକାର । ଏଗୁଡ଼ିକ ଅନୁମୋଦିତ ହୋଇଗଲେ ସରକାରଙ୍କ ବୈଷୟିକ ଓ ଆର୍ଥିକ ସାହାଯ୍ୟ ଦ୍ୱାରା ସେଗୁଡ଼ିକ କାର୍ଯ୍ୟରେ ପରିଣତ ହେବା ଉଚିତ ।

୧୧ । ଅନେକଗୁଡ଼ିଏ ନଦୀ ଦୁଇ ବା ତତୋଽଧିକ ରାଜ୍ୟମାନଙ୍କ ଭିତରେ ପ୍ରବାହିତ ହେଉଛି । ତେଣୁ ସଂପୃକ୍ତ ରାଜ୍ୟମାନଙ୍କ ସମବାୟ ଉଦ୍ୟମ ଉପରେ କାର୍ଯ୍ୟକ୍ରମଗୁଡ଼ିକର ସଫଳତା ନିର୍ଭର କରିବ ଓ ସମସ୍ତେ ଯଥାର୍ଥଭାବରେ ଖର୍ଚ୍ଚ ବହନ କରିବେ । କେନ୍ଦ୍ର ଅନୁଷ୍ଠାନ ସ୍ଥାପନ କରିବା ପାଇଁ ପ୍ରସ୍ତାବ ହୋଇଛି । ଗୋଟିଏ ସମ୍ମିଳିତ କାର୍ଯ୍ୟକ୍ରମ ବିଷୟରେ ରାଜ୍ୟମାନଙ୍କର ସମ୍ମତି ଆଣିବା ଉକ୍ତ କେନ୍ଦ୍ର ଅନୁଷ୍ଠାନର ଗୋଟିଏ କାର୍ଯ୍ୟ ହେବ ।

## ରାଜସ୍ଥାନ ମରୁଭୂମି ସମସ୍ୟା

୧୨ । ରାଜସ୍ଥାନର ଏକ ବଡ଼ ଅଞ୍ଚଳରେ ଓ ପଞ୍ଜାବ, ପାତିଆଲା-ପୂର୍ବପଞ୍ଜାବ-ରାଜ୍ୟ, ଉତ୍ତର-ପ୍ରଦେଶ, ସୌରାଷ୍ଟ୍ର ଓ କଚ୍ଛର ସଂଲଗ୍ନ ଅଂଶମାନଙ୍କରେ ମରୁ ଓ ଅର୍ଦ୍ଧ ମରୁ ଅବସ୍ଥା ଲାଗି ରହିଛି । ମରୁଭୂମି ବଢ଼ୁଥିବା ସମ୍ପର୍କରେ ଯୋଜନା କମିଶନର ଖ.ଠ. ସଂକ୍ଷିପ୍ତ ରିପୋର୍ଟରେ ଉଲ୍ଲେଖ କରାଯାଇଛି ଓ ଏ ସମସ୍ୟା ବିଷୟ ଆଲୋଚନା କରିବା ପାଇଁ ଅଳ୍ପଦିନ ତଳେ ଗୋଟିଏ ଆଡ୍‌ହକ୍ କମିଟି ନିଯୁକ୍ତ ହୋଇଛି । କମିଟି ଅନେକ ସୁପାରିଶମାନ କରିଥିଲେ । ରାଜସ୍ଥାନର ପଶ୍ଚିମ

ସୀମାନ୍ତରେ ପାଞ୍ଚ ମାଇଲବ୍ୟାପୀ ଉଦ୍ଭିଦ ମେଖଳା ରଖିବା ଏ ସୁପାରିଶ୍ ଗୁଡ଼ିକର ଅନ୍ତର୍ଗତ । ପ୍ରାଥମିକ ବ୍ୟବସ୍ଥା ରୂପେ ଯୋଧପୁରଠାରେ ଗୋଟିଏ ମରୁଭୂମି ଗବେଷଣା କେନ୍ଦ୍ର ସ୍ଥାପିତ ହୋଇଛି । ଏଠାରେ ମୃତ୍ତିକା, ଭୂମିର ବ୍ୟବହାର ଓ ଜଳସ୍ରୋତ ସମ୍ପର୍କରେ ଗବେଷଣା କରାଯିବ । ଉଦ୍ଭିଦମେଖଳା ରଖିବା ପାଇଁ ଗୋଟିଏ ଆଦର୍ଶ ଯୋଜନା କରାଯିବ । ମରୁଭୂମି ମାଡ଼ି ଆସୁଥିବା ଯୋଗୁଁ ଅନେକଗୁଡ଼ିଏ ରାଜ୍ୟ କ୍ଷତିଗ୍ରସ୍ତ ହେଉଅଛନ୍ତି । ତେଣୁ ପ୍ରତି ରାଜ୍ୟରେ ଏ ନେଇ ବ୍ୟବସ୍ଥା ଗ୍ରହଣ କରାଯିବା ଦରକାର, ସେ ବିଷୟ ସ୍ଥିର ସଂପୃକ୍ତ ରାଜ୍ୟସମୂହ ଓ କେନ୍ଦ୍ର ଅନୁଷ୍ଠାନର ପ୍ରତିନିଧିମାନଙ୍କଦ୍ୱାରା ନିର୍ଦ୍ଧାରିତ କାର୍ଯ୍ୟକ୍ରମ ବୃତ୍ତାନ୍ତ ଆକାରରେ ତିଆରି ହେବା ଆବଶ୍ୟକ ।

**ସଂଗଠନ**

୧୩ । ଉପରେ ସୂଚିତ ହୋଇଥିବା କାର୍ଯ୍ୟକ୍ରମଗୁଡ଼ିକୁ କାର୍ଯ୍ୟରେ ପରିଣତ କରିବା ନିମନ୍ତେ ଏବଂ ଭୂମି ଉପଯୋଗ ଓ ମୃତ୍ତିକା ସଂରକ୍ଷଣ କ୍ଷେତ୍ରରେ ସାଧାରଣଭାବେ ଉପଯୁକ୍ତ ନୀତି ଗଠନ ଓ ସମନ୍ୱୟ ନିମନ୍ତେ (କ) କେନ୍ଦ୍ରରେ ଗୋଟିଏ କେନ୍ଦ୍ର ଭୂମି ଉପଯୋଗ ଓ ମୃତ୍ତିକା ସଂରକ୍ଷଣ ସଂଗଠନ ଏବଂ (ଖ) ପ୍ରତି ରାଜ୍ୟରେ ଗୋଟିଏ ଲେଖାଏଁ ଭୂମି-ଉପଯୋଗ ଓ ମୃତ୍ତିକା ସଂରକ୍ଷଣ ବୋର୍ଡ଼ ଗଠନ କରିବା ପାଇଁ ସୁପାରିଶ୍ କରାଯାଇଛି ।



# ଓଡ଼ିଶାରେ ଯକ୍ଷ୍ମା ଓ କର୍କଟରୋଗ ଚିକିତ୍ସାଳୟ ପ୍ରତିଷ୍ଠା

ଶ୍ରୀ ପରମାନନ୍ଦ ମହାନ୍ତି

ଓଡ଼ିଶାରେ ଯକ୍ଷ୍ମା ଯେପରି ଭାବରେ ବ୍ୟାପୁଛି, ସେଥିର ପ୍ରତିକାରର ବ୍ୟବସ୍ଥା ଆଜଠୁଁ କରା ନ ଗଲେ ଭବିଷ୍ୟତ ଯେ କ'ଣ ହେବ, ତାହା ଠିକ୍ କରି ହେଉନାହିଁ । ହିସାବ କରି ଦେଖିଲେ, ପ୍ରତି ମିନିଟରେ ଆମଦେଶରେ ଜଣେ ଲୋକ ଯକ୍ଷ୍ମାରୋଗରେ ମରୁଛି; ଅଥଚ ଏପରି ଗୋଟିଏ ମାରାତ୍ମକ ରୋଗର ଚିକିତ୍ସା-ପାଇଁ ଓଡ଼ିଶାରେ ବିଶେଷ କୌଣସି ବ୍ୟବସ୍ଥା ବା ଉନ୍ନତ ଧରଣର ଚିକିତ୍ସାଳୟ ନାହିଁ । ସେହିପରି କର୍କଟ (Cancer) ରୋଗରେ ଆକ୍ରାନ୍ତ ହେଉଥିବା ରୋଗୀଙ୍କ ସଂଖ୍ୟା ମଧ୍ୟ କମ୍ ନୁହେଁ । ଓଡ଼ିଶାରେ କର୍କଟ ରୋଗ ଚିକିତ୍ସାର ମଧ୍ୟ କୌଣସି ସ୍ୱତନ୍ତ୍ର ବ୍ୟବସ୍ଥା ନାହିଁ । ଏହାର ଚିକିତ୍ସା ବହୁ ବ୍ୟୟସାପେକ୍ଷ ଓ ଆମ ରାଜ୍ୟର ଖୁବ୍ କମ୍ ରୋଗୀ ଏପରି ବ୍ୟୟସାପେକ୍ଷ ଚିକିତ୍ସା କରାଇବାକୁ ବିଦେଶକୁ ଯିବାକୁ ସକ୍ଷମ ।

ପୂର୍ବେ କେତେ ଲୋକ ଯକ୍ଷ୍ମାରୋଗରେ ଆକ୍ରାନ୍ତ ହେଲେ ତାଙ୍କୁ ଇଟକି, ମଦନାପଲ୍ଲି ବା କନୌଲି ପ୍ରଭୃତି ସ୍ଥାନକୁ ଚିକିତ୍ସାପାଇଁ ରାଜ୍ୟସରକାରଙ୍କ ତରଫରୁ ପଠାଯାଉଥିଲା । ଉପରୋକ୍ତ ସ୍ଥାନମାନଙ୍କରେ ଥିବା ଚିକିତ୍ସାକେନ୍ଦ୍ର ବା ସ୍ୱାସ୍ଥ୍ୟନିବାସମାନଙ୍କୁ ଆମ ରାଜ୍ୟସରକାର ଆର୍ଥିକ ସାହାଯ୍ୟ ଦେଉଥିଲେ । କିନ୍ତୁ

ଏହି ଅନୁଷ୍ଠାନମାନେ ଖୁବ୍ କମ ରୋଗୀଙ୍କୁ ଗ୍ରହଣ କରୁଥିଲେ । ୧୯୫୧ ମସିହାରେ ଏହିସବୁ ଅସୁବିଧାକୁ ଯଥାସାଧ୍ୟ ଦୂର କରିବା ସକାଶେ ଉଦାହାଣ୍ଡିରେ ଗୋଟିଏ ଯକ୍ଷ୍ମାଚିକିତ୍ସା କେନ୍ଦ୍ର ଖୋଲାଗଲା । ଏଥିରେ ୨୦ ଜଣ ରୋଗୀଙ୍କ ଚିକିତ୍ସା ପାଇଁ ବ୍ୟବସ୍ଥା କରାଯାଇଥିଲା । ପରେ ଅବଶ୍ୟ ଆମ ସ୍ୱାସ୍ଥ୍ୟମନ୍ତ୍ରୀଙ୍କ ଚେଷ୍ଟାରେ ସେଠାରେ ଖଟିଆ ସଂଖ୍ୟା ୬୪କୁ ବଢ଼ାଇ ଦିଆଯାଇଛି; କିନ୍ତୁ ଓଡ଼ିଶାରେ ଯକ୍ଷ୍ମାରୋଗ ଯେପରି ଦ୍ରୁତରେ ବଢ଼ିଚାଲିଛି ଓ ଯେତେ ଯକ୍ଷ୍ମାରୋଗୀ ଚିକିତ୍ସା ପାଇଁ ଅପେକ୍ଷା କରି ଅଛନ୍ତି, ସେ ହିସାବରୁ ଏହା ସମୁଦ୍ରକୁ ଶଙ୍ଖେ ପାଣି ବୋଲି ମନେହେଉଛି । ତେଣୁ ରାଜ୍ୟରେ ଅନ୍ତତଃ ୮୦ରୁ ୨୦୦ ଶଯ୍ୟାବିଶିଷ୍ଟ ଗୋଟିଏ ଉନ୍ନତ ଧରଣର ଓ ସର୍ବାଙ୍ଗ ଯକ୍ଷ୍ମା ଚିକିତ୍ସାଳୟ କରିବାର ପ୍ରୟୋଜନ ସମସ୍ତେ ଉପଲବ୍ଧି କରି ଆସୁଥିଲେ । ଯକ୍ଷ୍ମାରୋଗରେ ଫୁସଫୁସ୍ (Lungs)କୁ ଅସ୍ତ୍ରୋପଚାର କରି ବାହାର କରିଦେବା ଗୋଟିଏ ଆଧୁନିକ ଚିକିତ୍ସା ପଦ୍ଧତି । ବମ୍ବେ, ମାନ୍ଦ୍ରାଜ ପ୍ରଭୃତି କେତୋଟି ସ୍ଥାନ ଛାଡ଼ିଦେଲେ ଭାରତରେ ଅନ୍ୟତ୍ର ଏ ବ୍ୟବସ୍ଥା କେଉଁଠି ନାହିଁ । ଓଡ଼ିଶାରେ ପ୍ରସ୍ତାବିତ ଯକ୍ଷ୍ମା ଚିକିତ୍ସାଳୟରେ ଏପରି ଅସ୍ତ୍ରୋପଚାରର ବ୍ୟବସ୍ଥା କରିବା ଉଚିତ ବୋଲି ସମସ୍ତଙ୍କର ମତ; କିନ୍ତୁ କାର୍ଯ୍ୟରେ ଏ ଦିଗରେ ବିଶେଷ କିଛି କରାଯାଇ ନ ଥିଲା ।

ଓଡ଼ିଶାରେ ଏହିସବୁ ଅସୁବିଧା ଦୂର କରିବାର ପ୍ରୟୋଜନୀୟତା ଆମର ସ୍ୱାସ୍ଥ୍ୟ ଉପମନ୍ତ୍ରୀ ଶ୍ରୀମତୀ ବସନ୍ତମଞ୍ଜରୀ ଦେବୀ ଅନେକ ଦିନୁ ଉପଲବ୍ଧି କରି ଆସୁଥିଲେ । ମନ୍ତ୍ରିତ୍ୱ ଗ୍ରହଣର କିଛି ଦିନପରେ ଏ ବିଷୟରେ ସେ ଅନେକ ଡାକ୍ତର ଓ ବିଶେଷଜ୍ଞଙ୍କ ସହିତ କଥାବାର୍ତ୍ତା କରି ଆମେରିକା, ସୁଇଜରଲାଣ୍ଡ ତଥା ଭାରତର ଭିନ୍ନ ଭିନ୍ନ ଯକ୍ଷ୍ମା ଚିକିତ୍ସାଳୟମାନ ଦେଖି ଏହିପରି ଗୋଟିଏ ଚିକିତ୍ସା କେନ୍ଦ୍ର ଓଡ଼ିଶାରେ ସ୍ଥାପନ କରିବେ ବୋଲି ବଦ୍ଧପରିକର ହେଲେ । ୧୯୫୪ ମସିହାର ପ୍ରଥମ ଭାଗରେ ସେ ଦିଲ୍ଲୀଠାରେ ଭାରତର ପ୍ରଧାନମନ୍ତ୍ରୀଙ୍କ ସହିତ ସାକ୍ଷାତ କରି ନିଜର ମନୋଭାବ ପ୍ରକାଶ କଲେ ଓ ଓଡ଼ିଶାକୁ ଫେରିଆସି ଏଥିପାଇଁ ଗୋଟିଏ ନିବେଦନ ପତ୍ର ତାଙ୍କ ପାଖକୁ ପଠାଇଲେ । ଫଳରେ ଭାରତର ପ୍ରଧାନମନ୍ତ୍ରୀ ପଣ୍ଡିତ-ଜବାହାରଲାଲ ନେହରୁ ପ୍ରଥମେ ନିଜ ପାଣ୍ଠିରୁ ଏଥିପାଇଁ କୋଡ଼ିଏ ହଜାର ଟଙ୍କା ଦାନ କରି ଏହି ଅନୁକମ୍ପାମୂଳକ କାର୍ଯ୍ୟପାଇଁ ନିଜର ଶୁଭେଚ୍ଛା ଜଣାଇଲେ । ଏହା ଉପମନ୍ତ୍ରୀଙ୍କ ମନରେ ବିଶେଷ ଆଶାର ସଂଚାର କଲା ଓ ସେ କାୟମନୋ-ବାକ୍ୟରେ ସେହି ଦିନଠାରୁ ଅର୍ଥ ସଂଗ୍ରହ କାର୍ଯ୍ୟରେ ଲାଗିପଡ଼ିଲେ । ଇଚ୍ଛା ଥିଲେ ଉପାୟ ବଳେ ବଳେ ଆସେ । ପୁଣି ସାଧୁକାର୍ଯ୍ୟ ପାଇଁ କେବେହେଲେ ଟଙ୍କାର ଅଭାବ ପଡ଼େ ନାହିଁ । ଧୀରେ ଧୀରେ ଏହି ଅଳ୍ପଦିନ ମଧ୍ୟରେ ଉପମନ୍ତ୍ରୀଙ୍କ ଅଦମ୍ୟ ଚେଷ୍ଟାରେ ଏହି ପାଣ୍ଠି କ୍ରମଶଃ ବଢ଼ି ଚାଲିଛି । ଯୋଗାଣ ବିଭାଗର କ୍ରୀଡ଼ା ସଂଘ, କଟକ ଓ ପୁରୀ ଧାନଚାଉଳ ସଂଗ୍ରହକାରୀ ବେପାରୀ ସଂଘ ଓ ପୁରୀର କେତେକ ବିଶିଷ୍ଟ ବ୍ୟକ୍ତିଙ୍କ ଦାନ ସେଠାରେ ଉଲ୍ଲେଖଯୋଗ୍ୟ । ସ୍ଥିର ହୋଇଛି, ଯେଉଁମାନେ ଏକକାଳୀନ ପାଞ୍ଚଶହ ଟଙ୍କା ଏହି ପାଣ୍ଠିକୁ ଦେବେ, ତାଙ୍କ ନାମରେ ଗୋଟିଏ ଖଟିଆ ଏହି ପ୍ରସ୍ତାବିତ ଚିକିତ୍ସାଳୟରେ ଖୋଲାହେବ ।

ଏହି ପାଣ୍ଠିର ପ୍ରେସିଡେଣ୍ଟ ଶ୍ରୀଯୁକ୍ତ ହରେକୃଷ୍ଣ ମହତାବ ଓ ଚେୟାରମ୍ୟାନ ସ୍ୱାସ୍ଥ୍ୟ ଉପମନ୍ତ୍ରୀ ଶ୍ରୀମତୀ ବସନ୍ତମଞ୍ଜରୀ ଦେବୀ । ଏହାଛଡ଼ା ଶ୍ରୀଯୁକ୍ତ ପ୍ରାଣକୃଷ୍ଣ ପରିଜା, ଶ୍ରୀଯୁକ୍ତ ସୁଧାକର ସୂପକାର; ଅବସରପ୍ରାପ୍ତ ପ୍ରଧାନ ବିଚାରପତି ଶ୍ରୀ ବୀରକିଶୋର ରାୟ, ଶ୍ରୀମତୀ ଲକ୍ଷ୍ମୀମଣି ସେନାପତି, ସ୍ୱାସ୍ଥ୍ୟବିଭାଗର ଡିରେକ୍ଟର ଓ କଟକର ସିଭିଲ ସର୍ଜନ ପ୍ରଭୃତି ବିଶିଷ୍ଟ ବ୍ୟକ୍ତିମାନେ ଏହି ପାଣ୍ଠିର ସଭ୍ୟ । ଇମ୍ପେରିଆଲ ବ୍ୟାଙ୍କ ଏହି ପାଣ୍ଠିର କୋଷାଧ୍ୟକ୍ଷ । ସୁତରାଂ ଏହି ପାଣ୍ଠିରୁ କେବଳ ଯକ୍ଷ୍ମା ଚିକିତ୍ସା କେନ୍ଦ୍ର କାର୍ଯ୍ୟ ଛଡ଼ା ଅନ୍ୟ କୌଣସି

କାମ ପାଇଁ ପଇସାଟିଏ ଦେବାକୁ ନାରାଜ । ଏପରିକି ଏ ସଂସାରରେ ଗସ୍ତଖର୍ଚ୍ଚ ବା ଡାକ ଟିକଟପାଇଁ ସେ ପାଣ୍ଠିରୁ ନ ନେଇ ନିଜ ହାତରୁ ଦେଇଥାନ୍ତି ।

ଯକ୍ଷ୍ମା ଓ କର୍କଟ ରୋଗର ଚିକିତ୍ସା ପାଇଁ ଡାକ୍ତରଖାନା ବସାଇବାରେ ଅନ୍ୟୂନ ପ୍ରାଥମିକ ଖର୍ଚ୍ଚ ହିସାବରେ ୧୦ ଲକ୍ଷ ଟଙ୍କା ଲାଗିବ । ଅଳ୍ପଦିନ ଭିତରେ ଏ ପାଣ୍ଠି ପାଇଁ ଦେଶବାସୀଙ୍କର ଆଗ୍ରହ ଯେପରି ଦେଖାଯାଉଛି, ସେଥିରେ ଓଡ଼ିଶା ତଥା ବାହାରର ବଦାନ୍ୟ ବ୍ୟକ୍ତିମାନେ ଯେ ଏଥିପାଇଁ ମୁକ୍ତ ହସ୍ତରେ ଦାନ କରିବେ, ଏଥିରେ ସନ୍ଦେହ ନାହିଁ ।

ବର୍ତ୍ତମାନ ଦେଖାଯାଉ, ଏହି ଦୁଇ ପ୍ରକାର ଚିକିତ୍ସାଳୟ ପାଇଁ ସ୍ଥାନ କେଉଁଠି ହେଲେ ଠିକ୍ ହେବ । କର୍କଟ ରୋଗ ଚିକିତ୍ସା ପାଇଁ କଟକ ମେଡ଼ିକାଲ କଲେଜ ଡାକ୍ତରଖାନା ପ୍ରଶସ୍ତ ବୋଲି ମନେ କରାଯାଉଛି । ସେଠାରେ Deep Therapy ଭଳି ମୂଲ୍ୟବାନ ଯନ୍ତ୍ରପାତି ଏବେ ବସାଗଲାଣି, ଯାହା ଫଳରେ କି କର୍କଟ ରୋଗର ଚିକିତ୍ସା ସହଜ ଓ ସୁଗମ ହେବ ।

ତା'ପରେ ଯକ୍ଷ୍ମା ଚିକିତ୍ସାଳୟ । ଏଥିପାଇଁ ପୁରୀଜିଲ୍ଲାର ଖୁଦପୁର କୋଠିକୁ ସରକାର ମନୋନୀତ କରିଛନ୍ତି । କଲିକତା-ମାଡ୍ରାଜ ରେଲ ଲାଇନର କାଳୁପଡ଼ା ଘାଟ ଷ୍ଟେସନଠାରୁ ଏହା ମୋଟେ ୩ ମାଇଲ ଦୂର ଓ କଲିକତା ମାଡ୍ରାଜ ଟ୍ରଙ୍କରୋଡ଼ର ଠିକ ପାଖରେ ଏହା ଅବସ୍ଥିତ । ଏହା ଗୋଟିଏ ମନୋରମ ସ୍ଥାନ । ସ୍ଥାନଟି ଉଚ୍ଚିଆ; ତେଣୁ ଶୁଷ୍କ । ମୋଟେ ଦୁଇ ମାଇଲ ଦୂରରେ ଶୋଭାପାଉଛି ଅପୂର୍ବସୁନ୍ଦର ଚିଲିକା । ଏହି କୋଠିର ଚାରିପାଖରେ ୨୦ ଏକରର ଗୋଟିଏ ବିସ୍ତୀର୍ଣ୍ଣ ଉଦ୍ୟାନ ଅଛି । ଉଦ୍ୟାନଟି ଫଳଗଛରେ ପୂର୍ଣ୍ଣ, ନିକଟରେ ସମ୍ପ୍ରସାରଣ ପାଇଁ ଜାଗାର ଅଭାବ ନାହିଁ । ଏହିପରି ଏକ ସ୍ଥାନରେ ବର୍ତ୍ତମାନ ଅନ୍ତତଃ ୧୦୦ ରୋଗୀଙ୍କ ପାଇଁ ଚିକିତ୍ସା ହେବାର ଉପଯୋଗୀ ଗୋଟିଏ ଚିକିତ୍ସାଳୟ ତଥା ସ୍ୱାସ୍ଥ୍ୟନିବାସ ଖୋଲିବାର ବ୍ୟବସ୍ଥା ହୋଇଛି । ପରେ ମଧ୍ୟ କ୍ରମେ ୨୦୦ ରୋଗୀଙ୍କ ପାଇଁ ବ୍ୟବସ୍ଥା କରି ହେବ । ସରଟିର ନକ୍ସାମତେ କାର୍ଯ୍ୟ ଆରମ୍ଭ ହେବା ଉପରେ । ୧୯୫୫ ମସିହାର ପ୍ରଥମ ଭାଗରେ ଏହାର ଉଦଘାଟନ ଉତ୍ସବ କରାଯିବ ବୋଲି ଆମର ସ୍ୱାସ୍ଥ୍ୟ ଉପମନ୍ତ୍ରୀ କହି-ଛନ୍ତି । ଖାଦ୍ୟର ସୁବିଧା; ଯୋଗାଯୋଗ, ଜଳବାୟୁ—ସବୁଦିଗରୁ ସ୍ଥାନଟି ଉପଯୁକ୍ତ ବୋଲି ବିଶେଷଜ୍ଞମାନଙ୍କର ମତ ।

ସେଠାରେ ଗୋଟିଏ କଥା ଉଲ୍ଲେଖଯୋଗ୍ୟ । ଯୁଦ୍ଧରୁ ବୃଦ୍ଧି ପାଇଛି ସାଧୁକାର୍ଯ୍ୟ ପାଇଁ ଅର୍ଥର ଅଭାବ ପଡ଼େନାହିଁ । ଅନେକ ଧନୀ ଦାନଶୀଳ ଲୋକ ଅଛନ୍ତି ଯେଉଁମାନେ କି ଖୁସିରେ ହଜାର ହଜାର ଟଙ୍କା ଦାନ ଦେଇ ପାରନ୍ତି । କିନ୍ତୁ ଦାନର ମହତ୍ତ୍ୱ ବଢ଼େ ଦାତାର ସଦିଚ୍ଛାରେ । ଯଦି ଦେଶର ଶହଶହ ଦରିଦ୍ର ଲୋକ ସେମାନଙ୍କଠାରୁ ଅଳ୍ପ ଭାବରେ ପଡ଼ିଥିବା ଭାଇମାନଙ୍କ ରକ୍ଷାଲାଗି ସ୍ୱଇଚ୍ଛାରେ ପଇସାଟିଏ ମଧ୍ୟ ଏ ପାଣ୍ଠିକୁ ଦାନ କରନ୍ତି, ତେବେ ତାହା ଅତ୍ୟନ୍ତ ମହତ୍ତ୍ୱ ବୋଲି ବିବେଚିତ ହେବ । ଏହା ଯେ କେବଳ କଥାର କଥା, ତାହା ନୁହେଁ । ବ୍ରହ୍ମପୁରଠାରୁ ଅଳ୍ପଦୂରରେ ମିଞ୍ଚାପଡ଼ା ବୋଲି ଗୋଟିଏ ଗାଁର ଲୋକମାନଙ୍କୁ ଯେତେବେଳେ ଏହି ପାଣ୍ଠି କଥା ବୁଝାଗଲା, ସେତେବେଳେ ରିଥିଲୁ ପଇସା ନଥିଆ ପକେଇଲ ପର ଲୋକେ ଏହି ପାଣ୍ଠିର ସାହାଯ୍ୟ ପାଇଁ ପଇସା ଝୁଲିପାଖରୁ ପକେଇଲେ । ପଇସା ପଇସା ହୋଇ ଅଳ୍ପ କିଛି ସଂଗ୍ରହ ହେଲା ସତ, କିନ୍ତୁ ଆମ ଦେଶବାସୀଙ୍କ ସଦିଚ୍ଛା ଏଥିରୁ ସ୍ପଷ୍ଟ ଜଣାପଡ଼ିଲା । ସେଥିପାଇଁ ଉପମନ୍ତ୍ରୀ ଦେଶବାସୀ ସମସ୍ତଙ୍କୁ ନିବେଦନ କରିଛନ୍ତି । ମୁକ୍ତହସ୍ତରେ ଏହି ପାଣ୍ଠିକୁ ଦାନ କରିବା-ପାଇଁ ତାଙ୍କର ନିବେଦନ ଅନ୍ୟତ୍ର ପ୍ରକାଶ କରୁଅଛୁ ।

# ନିବେଦନ

ଶ୍ରଦ୍ଧେୟ ବନ୍ଧୁଗଣ !

ଆପଣମାନେ ବୋଧହୁଏ ଅବଗତ ଅଛନ୍ତି ଯେ ବହୁସଂଖ୍ୟକ ଲୋକ ଯକ୍ଷ୍ମା ଓ କର୍କଟ ରୋଗ ଭୋଗନ୍ତି ଓ ଏଥିରେ ପ୍ରାଣ ହରାନ୍ତି । କର୍କଟ ରୋଗ ସବୁଠୁଁ ବଳି ଯନ୍ତ୍ରଣାଦାୟକ ବ୍ୟାଧି ଏବଂ ଏ ରୋଗ ଯେଉଁମାନଙ୍କୁ ଧରେ ସେମାନଙ୍କ ମଧ୍ୟରୁ ଅଧିକାଂଶ ଚିକିତ୍ସା ବିନା ଶନୈଃ ଶନୈଃ ମୃତ୍ୟୁମୁଖରେ ପଡ଼ନ୍ତି ଏହା ଦେଖି ମନରେ ଦାରୁଣ ବ୍ୟଥା ଜାତ ହୁଏ । ସେମାନଙ୍କ ମୃତ୍ୟୁରେ ଆମ୍ଭେମାନେ ଶୋକ ପ୍ରକାଶ କରୁଁ ସତ, କିନ୍ତୁ ସେମାନଙ୍କ ମୂଲ୍ୟବାନ ଜୀବନକୁ ରକ୍ଷା କରିବା ନିମନ୍ତେ କୌଣସିମତେ କିଛି ବ୍ୟବସ୍ଥା ଯେ ହୋଇପାରୁନି ଏହା ଭାବି ଆମ୍ଭେମାନେ ମନକୁ ଆଶ୍ୱସ୍ତ କରିପାରୁଁ ନାହିଁ । ସରକାର ଏ ସମ୍ବନ୍ଧରେ ଯାହା କିଛି କରିବେ ତାହା



ପୂର୍ଣ୍ଣ ପ୍ରତିକାର ଦୃଷ୍ଟିରୁ କଦାପି ଯଥେଷ୍ଟ ହୋଇପାରିବ ନାହିଁ । ସାହାଯ୍ୟ ପ୍ରାର୍ଥୀ ଯନ୍ତ୍ରଣାଗ୍ରସ୍ତମାନଙ୍କ କାତର ଅନ୍ଦନ ଶୁଣି ପ୍ରତିକାର କରିବା ଏବେ ବଦାନ୍ୟ ଜନସାଧାରଣଙ୍କର ତେଣୁ ବହୁତ କରିବାର ଅଛି । ଅତଏବ ବ୍ୟାଧିଜର୍ଜରିତ ଏହି ଭାଇ ଭଗିନୀଙ୍କ ଜୀବନରକ୍ଷା କରିବା ନିମନ୍ତେ ମୋ ସାଧ୍ୟାନୁସାରେ ମୁଁ ଯାହା କରୁଅଛି ଏଥିରେ ମୋତେ ସାହାଯ୍ୟ କରିବା ନିମନ୍ତେ ଭାରତର ଚିରପରିଚିତ ଅନୁକମ୍ପା ମନୋଭାବ ଯେ ସମସ୍ତଙ୍କୁ ଅନୁପ୍ରାଣିତ କରିବ ଏ ବିଷୟରେ ମୋର ଦୃଢ଼ ବିଶ୍ୱାସ ଅଛି ।

ଭାରତର ଅନ୍ୟାନ୍ୟ ରାଜ୍ୟମାନଙ୍କ ଅବସ୍ଥା ତୁଳନାରେ ଓଡ଼ିଶାର ଅବସ୍ଥା ବୋଧହୁଏ ସବୁଠୁଁ ବଳି ଅଧିକ ଶୋଚନୀୟ । ଏହି ମାରାତ୍ମକ ରୋଗଦ୍ୱୟର ଯଥାଯଥ ପ୍ରତିକାର କରିବାକୁ ଓଡ଼ିଶାର ଯଥେଷ୍ଟ ଆର୍ଥିକ ସମ୍ବଳ ନାହିଁ । ତଥାପି ବଦାନ୍ୟ ଜନସାଧାରଣଙ୍କ ସହାୟତାରେ କିଛି କରିବା ନିମନ୍ତେ ଆମ୍ଭମାନଙ୍କର ଶକ୍ତି ଓ ସଂକଳ୍ପ ରହିଛି । ମୁଁ ଭାରତର ପ୍ରଧାନ ମନ୍ତ୍ରୀଙ୍କ ସହାନୁଭୂତି ଓ ସାହାଯ୍ୟ ପାଇଁ ନିବେଦନ କରିଥିଲି ଏବଂ ସେ ଅତ୍ୟନ୍ତ ଦୟା ପରବଶରେ ସେ ଦୀନ ପ୍ରାନ୍ତିକ ଓଡ଼ିଶା ଯକ୍ଷ୍ମା ଓ କର୍କଟରୋଗ ଚିକିତ୍ସାଳୟ ପାଣ୍ଠିକୁ ଟ ୨୦,୦୦୦ ଦାନ କରିଅଛନ୍ତି । ଆମ୍ଭେମାନେ ଆଧୁନିକ ଚିକିତ୍ସାର ଯାବତୀୟ ସୁବିଧା ସମନ୍ୱିତ ଗୋଟିଏ ଯକ୍ଷ୍ମା ସ୍ୱାସ୍ଥ୍ୟ ନିବାସ ଓ କର୍କଟରୋଗ ଚିକିତ୍ସାଳୟ ସ୍ଥାପନ କରୁଅଛୁଁ । କିନ୍ତୁ ଏଥିରେ ପ୍ରଚୁର ଅର୍ଥ ବ୍ୟୟ ହେବ ଏବଂ ମୋର ଦୃଢ଼ ବିଶ୍ୱାସ ବଦାନ୍ୟ ବ୍ୟକ୍ତି ଓ ଅନୁଷ୍ଠାନମାନେ ଦାନଦ୍ୱାରା ଏ ବ୍ୟୟ ତୁଲାଇଦେବେ । ତେଣୁ ଏ ପାଣ୍ଠିକୁ ମୁକ୍ତହସ୍ତରେ ଦାନ କରିବାକୁ ଓ ତଦ୍ଦ୍ୱାରା ଯନ୍ତ୍ରଣାଗ୍ରସ୍ତ ଲୋକଙ୍କର ତଥା ଓଡ଼ିଶାର ଜନସାଧାରଣଙ୍କର କୃତଜ୍ଞତା ଅର୍ଜନ କରିବାକୁ ମୁଁ ଓଡ଼ିଶାର ଜନସାଧାରଣଙ୍କ ପକ୍ଷରୁ ସେମାନଙ୍କୁ ନିବେଦନ କରୁଅଛି ।

ନିବେଦିକା

**ଶ୍ରୀମତୀ ବସନ୍ତମଞ୍ଜରୀ ଦେବୀ**

ଓଡ଼ିଶାର ସ୍ୱାସ୍ଥ୍ୟ ଉପମନ୍ତ୍ରୀ ଓ

ଯକ୍ଷ୍ମା ଓ କର୍କଟ ରୋଗଚିକିତ୍ସାଳୟ

ପାଣ୍ଠିର ସଭାନେତ୍ରୀ